NATION ON THE MOVE

# Towards reduction of inequality

The income-tax exemption limit has been raised to Rs. 8,000 (it was Rs. 6,000); this brings relief to 7 lakh tax-payers. Side by side, new assessees have been discovered; last year 1.33 lakh persons were served notice for payment of income-tax.

Today there is ample encouragement for personal saving (savings up to Rs. 4,000 a year are totally tax-free) and there is punishment for those who seek to cheat the State.



## IRON WILL AND HARD WORK SHALL SUSTAIN US

For a free booklet on
TAXES FOR DEVELOPMENT
please write

**ରାମ ଓ ଶ୍ୟାମ**
**କଲେ ଶକୁନ୍ତଳାଙ୍କ ରକ୍ଷା**



















**ବିନାମୂଲ୍ୟରେ**
ମନୋରଞ୍ଜନ
ଅମର ଚିତ୍ରକଥା କମିକ–
୨୦ ଟି ପପିନସ ବା
ଗବଲିନ୍ସର ଖୋଳ
ବଦଳରେ




**...ାଳ ମଧୁର ମଜାଦାର**
**ପାର୍ଲେ**
**...ପିନସ**
**...ର ସ୍ୱାଦଭରା ମିଠାଗୋଲି**



ନିମ୍ନଲିଖିତ କମିକବହି ମିଳୁଛି :
୧. ଶକୁନ୍ତଳା
୨. ରାଣା ପ୍ରତାପ
୩. ଶିବ ପାର୍ବତୀ
୪. ଭୀଷ୍ମ
୫. ବନ୍ଦା ବାହାଦୁର
୬. ପଦ୍ମିନୀ
୭. ଜାତକ କାହାଣୀ
୮. ବାଲ୍ମିକୀ
୯. ତାରାବାଈ
୧୦. ରଣଜିତ ସିଙ୍ଘ

ଇଂରାଜି-ହିନ୍ଦି-ମରାଠି-ଗୁଜରାଟି ଭାଷାରେ ମିଳୁଛି ।
ତୁମର ନାମ, ଠିକଣା ଏବଂ କେଉଁ ନମ୍ବରର କମିକ କେଉଁ ଭାଷାରେ ଚାହଁ, ଖୋଳ ସହିତ ଏହି ଠିକଣାରେ ଲେଖି ପଠାଅ :

ପାର୍ଲେ ପ୍ରୋଡାକ୍ଟସ ପ୍ରାଃ ଲିଃ ନିରଲନ ହାଉସ, ୨୫୪-ବି, ଡଃ ଆନି ବସନ୍ତ ରୋଡ, ବମ୍ବେ-୪୦୦୦୨୫ ।

## ଜହ୍ନମାମୁଁ : ମୂଲ୍ୟ ପରିବର୍ତ୍ତନ

ଯଥା ସମ୍ଭବ କମ ମୂଲ୍ୟରେ 'ଜହ୍ନମାମୁଁ'କୁ ପାଠକପାଠିକାଙ୍କ ହାତରେ ଦେବା ପାଇଁ ଆମେ କମ ଉଦ୍ୟମ କରିନାହୁଁ । ଅନ୍ୟାନ୍ୟ ପତ୍ରପତ୍ରିକାର ମୂଲ୍ୟବୃଦ୍ଧି ସତ୍ତ୍ୱେ 'ଜହ୍ନମାମୁଁ'କୁ ଆଜଯାଏ ଏକ ଟଙ୍କାରେ ହିଁ ଯୋଗାଇ ଆସିଥିଲୁଁ ।

କିନ୍ତୁ ପ୍ରତିକୂଳ ପରିସ୍ଥିତିରେ ସେ ଅବସ୍ଥା ବଜାୟ ରଖିବା ଆଉ ସମ୍ଭବ ହେଉନାହିଁ । ସବୁ ଦିଗରୁ ଖର୍ଚ୍ଚ ବଢ଼ି ଯାଇଛି । ବାଧ ହୋଇ ଆଗାମୀ ନଭେମ୍ବର ୧୯୭୬ ସଂଖ୍ୟାରୁ 'ଜହ୍ନମାମୁଁ'ର ମୂଲ୍ୟ ଟ୧·୨୫ ପଇସା କରିବାକୁ ପଡ଼ୁଛି । ତେବେ ସଙ୍ଗେ ସଙ୍ଗେ ପତ୍ରିକାର କଳେବର ଆଉ ସ୍ତୃରପୃଷ୍ଠା ବଢ଼ିବ ଏବଂ ଅଧିକ ପାଠ୍ୟ ସାମଗ୍ରୀ ପରିବେଷିତ ହେବ । ପତ୍ରିକାଟିକୁ ଆକର୍ଷଣୀୟ ଓ ଶିକ୍ଷାପ୍ରଦ କରିବା ଦିଗରେ ଆହୁରି କେତେକ ପଦକ୍ଷେପ ମଧ୍ୟ ନିଆ ଯାଉଛି । ଏସବୁ ଦୃଷ୍ଟିରୁ ଏଭଳି ଅନିଚ୍ଛାକୃତ ମୂଲ୍ୟବୃଦ୍ଧି ପାଠକ-ପାଠିକାମାନେ ସ୍ୱୀକାର କରିନେବେ ବୋଲି ଆମର ବିଶ୍ୱାସ ।

**ପ୍ରକାଶକ**

---

## 'ଜହ୍ନମାମୁଁ'ର ଗ୍ରାହକମାନଙ୍କ ପ୍ରତି

ଯଦି ଆପଣ ଆପଣଙ୍କ ଠିକଣା ବଦଳାଉଥାନ୍ତି, ତେବେ ପାଞ୍ଚ ତାରିଖ ପୂର୍ବରୁ ଆପଣଙ୍କ ଗ୍ରାହକ ନମ୍ବର ସମେତ ଦୟାକରି ଆମକୁ ସେକଥା ଜଣାଇ ଦେବେ । ନ ହେଲେ ପରବର୍ତ୍ତୀ ସଂଖ୍ୟା ନୂଆ ଠିକଣାରେ ପଠାଇବା ସମ୍ଭବ ହେବ ନାହିଁ ।

ଆପଣଙ୍କ ସହଯୋଗ ଆମର କାମନା ।

ଡଲ୍ଟନ୍ ଏଜେନ୍ସୀଜ୍, ମାଡ୍ରାସ-୬୦୦ ୦୨୬

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗି ରେଡ୍‌ଡୀ

---

ଏ ସଂଖ୍ୟାର ବେତାଳ କଥା 'ଦଣ୍ଡର ଅଧିକାର' ଗଳ୍ପର ତାତ୍ପର୍ଯ୍ୟ ଆମେ ବୁଝିବା ଆବଶ୍ୟକ । ଯିଏ ଶାସକ ତା' ହାତରେ ଦଣ୍ଡ ଦେବାର ଅଧିକାର ଥାଏ । କିନ୍ତୁ ଯେଉଁ ନୀତି ନିୟମ ଦ୍ୱାରା ସେ ଅନ୍ୟର ଦଣ୍ଡ ବିଧାନ କରେ, ନିଜ ଆଚରଣରେ ମଧ୍ୟ ସେ ନୀତି ନିୟମକୁ ସେ ମାନିବା ଆବଶ୍ୟକ । ସେ ଯଦି ତାହା ନକରେ, ତେବେ ତାହା ଉପରେ ଲୋକଙ୍କର ଆସ୍ଥା ରହେ ନାହିଁ । ସୁଯୋଗ ପାଇବା ମାତ୍ରେ ଲୋକେ ସେମାନଙ୍କ ଅନାସ୍ଥାର ପରିଚୟ ଦିଅନ୍ତି ।

---

ବର୍ଷ : ୧୦ ଅକ୍ଟୋବର ୧୯୭୭ ଅଙ୍କ : ୪




CHITRA



# ମିତ୍ରଲାଭ

[ ୬ ]

ଲୋଭୀ ଶୃଗାଳ ଉପାଖ୍ୟାନଟି ଶୁଣି ସାରି ବ୍ରାହ୍ମଣୀ ତା' ସ୍ୱାମୀକୁ କହିଲା, "ବେଶ୍ । ଘରେ କିଛି ତିଳ ଅଛି । ତମେ ବଣରୁ ଶୁଖିଲା କାଠ ନେଇ ଆସ । ମୁଁ ତିଳରେ କିଛି ସୁଖାଦ୍ୟ ତିଆରି କରିବି । ତିନି ଜଣ ବ୍ରାହ୍ମଣଙ୍କୁ ଭୋଜନ ଦେବା ।"

ବ୍ରାହ୍ମଣ ବଣକୁ ଗଲା । ତା' ସ୍ତ୍ରୀ ତିଳ କୁଟି ସେଥିରୁ ଚୋପାତକ ବାହାର କରିଦେଇ କ୍ଷୀରି ବନାଇବା ଉଦ୍ଦେଶ୍ୟରେ ତାକୁ ଖରାରେ ଶୁଖାଇଲା । ସେ ରୋଷେଇ ପାଇଁ ବ୍ୟବସ୍ଥା କରୁଛି, ତେଣେ କୁକୁରଟାଏ ଆସି ସେ ତିଳକୁ ଅପରିଷ୍କାର କରିଦେଇ ଚାଲିଗଲା ।

"ହାୟ ! ମୁଁ ବ୍ରାହ୍ମଣମାନଙ୍କୁ କଅଣ ଖୁଆଇବି ? ଘରେ ଆଉ କିଛି ନାହିଁ । ଏକମାତ୍ର ଉପାୟ, ଏ ତିଳ ବଦଳାଇ କାହାଘରୁ କିଛି ଭଲ ତିଳ ଆଣିବାକୁ ହେବ ।" ବ୍ରାହ୍ମଣୀ ନିଜକୁ ନିଜେ କହିଲା ।

ତା'ପରେ ପଡ଼ୋଶୀ ଘରକୁ ଯାଇ ସେ ଘରର ଗୃହିଣୀକୁ ପଚାରିଲା, "ଭଉଣୀ ! କିଛି ଚୋପା ଛଡ଼ା ତିଳ ନେଇ ମୋତେ ଅଛଡ଼ା ତିଳ ଦେବ ?"

ଗୃହିଣୀ ଭାବିଲେ, ଇଏତ ଅତି ଉତ୍ତମ ପ୍ରସ୍ତାବ । ସେ ତତ୍‌କ୍ଷଣାତ୍ ଚୋପା ଛଡ଼ା ତିଳତକ ନେଇ ଅଛଡ଼ା ତିଳ ଦେଇ ଦେଲେ । ବ୍ରାହ୍ମଣୀ ଚାଲିଯିବା ପରେ ଗୃହିଣୀ ନିଜ ପୁଅ ଆଗରେ ବାହାଦୁରି ଦେଖାଇଲେ ଯେ ସେ ଖୁବ୍ ବୁଦ୍ଧିମନ୍ତ ଭଳି କାମ କରିଛନ୍ତି । ଅଛଡ଼ା ତିଳ ବଦଳରେ ଚୋପା ଛଡ଼ା ତିଳ ସଂଗ୍ରହ କରିଛନ୍ତି !

ଶେଷ ପ୍ରଚ୍ଛଦ ଛବି ଦେଖନ୍ତୁ



"ମା ମୋର କିନ୍ତୁ ମନେହୁଏ ଏଥିରେ କିଛି ରହସ୍ୟ ଅଛି । ପରିଶ୍ରମ କରି ତିଳ କୁଟିବା ପରେ ଜଣେ କାହିଁକି ତାକୁ ଦେଇ ଅଛଡ଼ା ତିଳ ନେଇଯିବ ? ସେ ସ୍ତ୍ରୀ ଲୋକଟି କିଏ ?" ପୁଅ ପଚାରିଲା ।

ମା' କହିଲେ କି ସେ ପଡ଼ୋଶୀ ଘରର ବ୍ରାହ୍ମଣୀ ।

"ମା ! ସେ ସ୍ତ୍ରୀ ଲୋକ ଅତ୍ୟନ୍ତ ଚତୁର ବୋଲି ମୁଁ ଜାଣେ । ତମେ ସେ ତିଳତକ ଫୋପାଡ଼ି ଦିଅ । ତାହା ଅଖାଦ୍ୟ ହୋଇ ନ ଥିଲେ ସେ ତାକୁ ବଦଳାଇ ନ ଥାନ୍ତା ।" ପୁଅ କହିଲା ।

ମା ପୁଅ କଥା ମାନି ତିଳତକ ଫୋପାଡ଼ି ଦେଲେ ।

ଏସବୁ କଥା ବୃହସ୍ପତି ଚୂଡ଼ାକର୍ଣ୍ଣଙ୍କୁ କହୁଥିଲେ । କହିସାରି ସେ ଖଣ୍ଡିଏ ଗୋଜିଆ ବାଡ଼ିରେ ମୂଷା ବିଲ ଖୋଳିବାକୁ ଲାଗିଲେ । ମୂଷା କାକ ଓ କଚ୍ଛପକୁ ତା' କାହାଣୀ ଶୁଣାଇ ଚାଲିଲା :—

ମୋତେ ତ ଭାରି ଡର ଲାଗିଲା । ସୁଡ଼ଙ୍ଗ ଭିତରେ ମୁଁ କିଛି ଗେହ୍ଣା ସୁନା ଓ ଖାଦ୍ୟଦ୍ରବ୍ୟ ସାଇତି ରଖିଥିଲି । ବୁଝିଲ, ଏଥର ସବୁ ଗଲା । ସମ୍ପତ୍ତିର ମାୟା ଛାଡ଼ି ପ୍ରାଣ ବିକଳରେ ମୁଁ ସେଠାରୁ ଚମ୍ପଟ ଦେଲି ।

ଦୂରରୁ ଦେଖିଲି ସେମାନେ ମୋ ସଞ୍ଚୟତକ କାଢ଼ି ନେଇ ବହୁତ ଖୁସି ହୋଇ ବସିଲେ । ଘର, ସମ୍ପତ୍ତି ସବୁ ହରାଇ ମୁଁ ମୋ ଅନୁଚରମାନଙ୍କ ସହ ସ୍ଥାନାନ୍ତରକୁ ଚାଲିଲି ।

କିନ୍ତୁ ମୋ ଅନୁଚରମାନେ କ୍ଷୁଧାର୍ତ୍ତ ଥିଲେ । ଚୂଡ଼ାକର୍ଣ୍ଣଙ୍କ ଆହାର ପାତ୍ର ଟଙ୍ଗା ହୋଇଥିଲା । ସେଥିରୁ କିଛି ଆତ୍ମସାତ୍ କରିବା ଉଦ୍ଦେଶ୍ୟରେ ଆମେ ପୁଣି ତାଙ୍କ କୁଡ଼ିଆ ଆଡ଼କୁ ଫେରିଲୁଁ । ଆମ ଶବ୍ଦ ବାରି ପାରି ଚୂଡ଼ାକର୍ଣ୍ଣ ଲାଠି ହଲାଇଲେ ।

"କ'ଣ ହେଲା ?" ବୃହସ୍ପତି ପଚାରିଲେ ।

"ସେ ବଦ୍‌ମାସ ମୂଷାମାନେ ଏଇଠି ଅଛନ୍ତି ।" ଚୂଡ଼ାକର୍ଣ୍ଣ ଉତ୍ତର ଦେଲେ ।

"ଥାଆନ୍ତୁ । ସେମାନଙ୍କ ସଞ୍ଚିତ ସମ୍ପଦ ଯିବା

ପରେ ସେମାନେ ମୃତପ୍ରାୟ । ତମର କିଛି କ୍ଷତି କରିପାରିବେ ନାହିଁ ।" ବୃହସ୍ପତି କହିଲେ ।

ସେକଥା ଶୁଣି ମୁଁ ଡରିଗଲି ଓ ଟାଙ୍ଗି ହୋଇଥିବା ପାତ୍ର ଆଡ଼କୁ ଲଂଫ ଦେବାକୁ ଚେଷ୍ଟା କଲି । କିନ୍ତୁ ପାରିଲି ନାହିଁ । ଅଧାରୁ ତଳେ ପଡ଼ିଗଲି । ବୃହସ୍ପତି ବାଡ଼ି ମୋ ଆଡ଼କୁ ଲକ୍ଷ୍ୟ କରି ଫୋପାଡ଼ିଲେ । କିନ୍ତୁ ଦୈବରେ ସେ ଭାଗ୍ୟବାଦୀ ଭଳି ମୁଁ ଅଳପକେ ବର୍ତ୍ତିଗଲି ।

"ଭାଗ୍ୟବାଦୀ କଥାଟି କ'ଣ ?" ମନ୍ଥରକ ପଚାରିଲା ।

ହିରଣ୍ୟକ ଗପିଲା :

## ଭାଗ୍ୟବାଦୀ କଥା

ଉଜ୍ଜୟିନୀ ନଗରୀରେ ଥିଲା ସାଗରଦତ୍ତ ନାମକ ବଣିକ । ଦିନେ ତା' ପୁଅ ଶହେ ଟଙ୍କା ନେଇ ଖଣ୍ଡିଏ ପୋଥି କିଣି ନେଇ ଆସିଲା । ସେଥିରେ ମାତ୍ର ଏକ ପଦ ଶ୍ଳୋକ ଲେଖାଥିଲା ।

ବଣିକ ପଚାରିଲା, "ଏ ପୋଥି କେତେ ଟଙ୍କା ଦେଇ କିଣିଲୁ ?"

"ଶହେ ଟଙ୍କା ।" ପୁଅ କହିଲା ।

ବଣିକ ଏଭଳି ଉତ୍ତର ଶୁଣି ତଟସ୍ଥ ହୋଇଗଲା । କଷ୍ଟାର୍ଜିତ ଅର୍ଥକୁ ପୁଅ ଏହିପରି ଭାବରେ ବ୍ୟୟ କରୁଥିବାର ଜାଣି ସେ ମୁଣ୍ଡରେ ହାତ- ଦେଇ କିଛି ସମୟ ପର୍ଯ୍ୟନ୍ତ ନିର୍ବାକ ହୋଇ ବସି ରହିଲା ।

"ବୁଦ୍ଧୁ ! ପଦେ ଶ୍ଳୋକକୁ ଶହେ ଟଙ୍କା ! ତୁ ଏ ଘରର ସର୍ବନାଶ କରିବୁ । ପଳା ଏଠାରୁ ।" ଏହା କହି ସେ ପୁଅକୁ ନିର୍ଦ୍ଦୟ ଭାବରେ ଘରୁ ତଡ଼ି ଦେଲା ।

ଦୁଃଖିତ ହୋଇ ପୁଅ ବହୁ ଦୂର କୋଶାମ୍ବୀ ନଗରୀରେ ପହଞ୍ଚି ସେଇଠି ରହିଥାଏ । ଲୋକେ ଯେତେବେଳେ ପଚାରନ୍ତି, ତମେ "କୁଆଡ଼ୁ ଆସିଲ ? କାହିଁକି ?" ସେ ଗୋଟିଏ ମାତ୍ର ଉତ୍ତର ଦିଏ, "ସବୁ ଭାଗ୍ୟର ଖେଳ ।"

କୋଶାମ୍ବୀବାସୀମାନେ ତାକୁ "ଭାଗ୍ୟର ଖେଳ" ବୋଲି ଡାକିବାକୁ ଲାଗିଲେ !

(କ୍ରମଶଃ)





# ପାମ୍ପା ସରୋବର

[ ୮ ]

[ଗଜାରେଖା ମଗର-ରୂପୀର ବଚନ ଅନୁସାରେ ଗ୍ରାମବାସୀମାନେ ଦୁଇ ଜଣ ବୈଦ୍ୟ ଆଣି ହାଜର୍ କଲେ । ବୈଦ୍ୟ ବୀରନାରାୟଣ ଗଜାରେଖା କାଖରେ ପଶି ଯାଇଥିବା ଭଙ୍ଗା ଖଣ୍ଡା ବାହାର କରିବାକୁ ଉଦ୍ୟତ ହେବା ବେଳକୁ ଦୂରରୁ ଅନ୍ୟ ବୈଦ୍ୟ ଚରକାଗ୍ନିଙ୍କ ଆର୍ତ୍ତନାଦ ସାଙ୍ଗକୁ ବନ୍ୟ ହାତୀ ଦଳର ସ୍ୱର ଶୁଭିଲା । ତା'ପରେ—]

ବଣୁଆ ହାତୀଦଳ ମାଡ଼ି ଆସୁଛନ୍ତି ବୋଲି ମଗର-ରୂପୀର ଧାରଣା ହେଲା । ସେ ଧାରଣା ଅଚିରେ ସତ୍ୟ ବୋଲି ପ୍ରମାଣିତ ହେଲା । ଗୃହୁଁ ଗୃହୁଁ ଛଅଗୋଟି ହାତୀ ବଣ ବୁଦା ଭିତରୁ ବାହାରି ଆସିଲେ ।

କିନ୍ତୁ ମଗର-ରୂପୀ ଜାଣିଥିଲା, ତା'ର ବଚନ ତାଲିମ୍ ପ୍ରାପ୍ତ ହାତୀ ନିଶ୍ଚୟ ସେମାନଙ୍କୁ ଘଉଡ଼ାଇ ଦେଇ ପାରିବ । ସେ ନିଜ ତ୍ରିଶୂଳ ଉପରକୁ ଉଞ୍ଚାଇ ବଣୁଆ ହାତୀପଲ ଆଡ଼କୁ ଝପଟି ଗଲା । ହାତୀପଲ ଓ ସେ ମୁହାଁମୁହିଁ ହୋଇ ଆସିବା ବେଳକୁ ସେ ନିଜ ସବାରିକୁ ସମ୍ବୋଧନ କରି କହିଲା, "ଜଳଗ୍ରହ ! ଏ ବଣୁଆ ହାତୀଦଳକୁ ତୁ ଥରେ ନିଜ କରାମତି ଦେଖାଇ ଦେ ।"

ଜଳଗ୍ରହ ଦୁଇଗୁଣ ବେଗରେ ଧାଇଁ ଯାଇ




ବଣୁଆ ହାତୀଦଳକୁ ସାମ୍ନା କଲା । ତା’ ନାଦରେ ବଣୁଆ ହାତୀମାନେ ତଟସ୍ଥ ହୋଇ ରହିଗଲେ । ସେ ଗୋଟାଏ ହାତୀ ମୁଣ୍ଡରେ ନିଜ ଦାନ୍ତ ଭୁଷି ଦେଲା । ଆହତ ହୋଇ ହାତୀଟି ତଳେ ପଡ଼ିଗଲା । ମଗର-ରୂପୀ ତତ୍‌କ୍ଷଣାତ୍ ଅନ୍ୟ ଗୋଟାଏ ହାତୀକୁ ଲକ୍ଷ୍ୟ କରି ତ୍ରିଶୂଳ ମାରିଲା । ସେ ବି ତଳେ ଲୋଟିଗଲା । ଜଳଗ୍ରହ ତାକୁ ନିଜ ଗୋଡ଼ରେ ଦଳି ଦେଇ ଆହୁରି ଆଗକୁ ଝପଟି ଯାଇ ତୃତୀୟ ହାତୀକୁ ଶୁଣ୍ଢରେ ପ୍ରହାର କରି ତଳେ ପକାଇ ଦେଲା ।

ନିଜ ଦଳର ତିନିଗୋଟି ହାତୀକୁ ହଠାତ୍ ଏପରି ଏପରି ଭାବରେ ହିନସ୍ତା ହେବାର ଦେଖି ବାକି ହାତୀମାନେ ପୃଷ୍ଠଭଙ୍ଗ ଦେଲେ । ମଗର-ରୂପୀ ସେମାନଙ୍କ ଅନୁସରଣ କରି ପଛରୁ ସେମାନଙ୍କୁ ଆଘାତ କରିବାକୁ ଲାଗିଲା । ଆହତ ହୋଇ, ଆର୍ତ୍ତନାଦ କରି ସେମାନେ ବଣ ଆଡ଼କୁ ପଳାଇ ଗଲେ ।

ସେମାନଙ୍କୁ କିଛିଦୂର ଅନୁସରଣ କରି ନିଜେ କ୍ଲାନ୍ତ ଅନୁଭବ କରି ମଗର-ରୂପୀ ନିଜ: ବାହନକୁ ଅଟକାଇ ସ୍ଥିର ହେଲା । ସେତେବେଳକୁ ଯାଇ ତା’ର ଖିରନାରାୟଣ କଥା ମନେ ପଡ଼ିଲା । ସେ ବୈଦ୍ୟ ପୂର୍ବରୁ ତା’ ପାଖରେ ବସିଥିଲା । ତା’-ପରେ ଗୋଳମାଳ ଭିତରେ ତଳକୁ ଖସିପଡ଼ି ପଞ୍ଚତ୍ୱପ୍ରାପ୍ତ ହୋଇ ନାହିଁ ତ ?

ସେଭଳି ସନ୍ଦେହ ଆସିବାରୁ ସେ ଆତଙ୍କିତ ହୋଇ ଚାରି ଆଡ଼କୁ ଥରେ ଅନାଇ ସାରି ତା’ପରେ ଉଚ୍ଚସ୍ୱରରେ ଡାକିଲା, “ଖିର-ନାରାୟଣ ! ତମେ ଗଲ କୁଆଡ଼େ ?”

ହଠାତ୍ ନିଜ ପଛପଟରୁ କେଉଁଠାରୁ ସେ ଭୟକମ୍ପିତ ଉତ୍ତର ଶୁଣିବାକୁ ପାଇଲା, “ଆଜ୍ଞା ! ମୁଁ ଆପଣଙ୍କ ପୋଷାକର ଲାଂଗୁଳ ଧରି ଓହଳି ରହିଛି । ଆଗ କହନ୍ତୁ, ବଣୁଆ ହାତୀଙ୍କୁ ଆମେ ଜିତିଲୁଁ, ନା ସେମାନେ ଆମକୁ ଜିତିଲେ ?”

ଯେତେବେଳେ ବଣୁଆ ହାତୀଦଳ ସହ ମଗର-ରୂପୀର ଲଢ଼େଇ ଆରମ୍ଭ ହେଲା, ସେତେବେଳେ ଖିରନାରାୟଣ ତଳକୁ ଡେଇଁ ପଡ଼ି ପଳାଇବାକୁ

ଗୁହୁଁ ଥିଲେ । କିନ୍ତୁ ତଳେ ସେ କାଳେ ହାତିଦଳ ପାଦରେ ଚପି ହୋଇ ମରିବେ, ସେହି ଡରରେ ମଗର-ରୂପୀର ପୋଷାକର ଲମ୍ବ ପୁଚ୍ଛକୁ ଧରି ସେ ଓହଳ ରହିଥିଲେ । ଲଢ଼େଇର ପରିଣତି କ'ଣ ହେଲା, ସେସବୁ ସେ ଜାଣି ନଥିଲେ । କାରଣ ସେ ସମୟତକ ସେ ଭୟରେ ଆଖି ବୁଜି ରହିଥାନ୍ତି ।

କ୍ଷୀରନାରାୟଣଙ୍କ କଣ୍ଠସ୍ୱର ଶୁଣି ମଗର ରୂପୀ ଟିକିଏ ଆଶ୍ୱସ୍ତ ହେଲା ଓ କହିଲା, "ଓ, ତମେ ଜଳଗ୍ରହ ପଛରେହିଁ ଲପଟି ରହିଛ ! ଆମେ ବଣୁଆ ହାତି ଦଳକୁ ଠେଙ୍ଗେ ଦେଇ ଏ ଅଞ୍ଚଳରୁ ତଡ଼ି ଦେଇଛୁଁ । ଆଉ ଭୟ ନାହିଁ । ମୋ କାଖରେ ପଶି ରହିଥିବା ଖଣ୍ଡାକୁ କେତେ ବେଳେ ବାହାର କରିବ ?"



"ମଗର-ରୂପୀ ଆଜ୍ଞା ! ବ୍ୟସ୍ତ ହେବେ ନାହିଁ । ଲଢ଼େଇରେ ବ୍ୟସ୍ତ ରହି ଆପଣ ଗୋଟାଏ କଥା ଭୁଲି ଯାଇଛନ୍ତି । ଆମେ ବଣୁଆ ହାତିଦଳ ଆଗରେ ପଡ଼ିବା ପୂର୍ବରୁ ଚରକାଗୃଷିଙ୍କ ଆର୍ତ୍ତ-ନାଦ ଶୁଣା ଯାଇଥିଲା । ସେ ଔଷଧି ଚେରମୂଳ ସନ୍ଧାନରେ ବଣରେ ପଶିଥିଲେ । ପ୍ରଥମେ ଆମେ ତାଙ୍କୁ ଖୋଜି ବାହାର କରିବା ।" କ୍ଷୀରନାରାୟଣ କହିଲେ ।

ମଗର-ରୂପୀର ସବୁ କଥା ମନେ ପଡ଼ିଗଲା । ସେ କହିଲା, "ହଁ, ହଁ, ଠିକ୍ । ଚରକାଗୃଷି ଦୁଇ ତିନିଥର ଆର୍ତ୍ତନାଦ କରି ତା'ପରେ ଚୁପ୍ ହୋଇ-ଯାଇଥିଲେ । ଆଚ୍ଛା, ଯଦି ସେ ବାଘ ବା ଭାଲୁ ହାତରେ ପଡ଼ି ଜୀବନ ଦେଇଥିବେ, ତେବେ କ'ଣ ମୋ କାଖରୁ ଖଣ୍ଡା ବାହାରିବ ନାହିଁ ? ଯେଉଁ ଔଷଧରେ ଘା ଶୁଖିବ, ସେ ଔଷଧର ସନ୍ଧାନ କ'ଣ ତମକୁ ମାଲୁମ୍ ନାହିଁ ?"

କ୍ଷୀରନାରାୟଣ ହସି ଉଠି କହିଲେ, "ଆପଣ କ'ଣ ସତରେ ବିଶ୍ୱାସ କରୁଛନ୍ତି ଯେ ଜଣେ ବୈଦ୍ୟ ହୋଇ ଘା ଶୁଖାଇବାର ଔଷଧ ଜାଣିବି ନାହିଁ ? କଥା ହେଲା, ମୋର ଓ ଚରକାଗୃଷିଙ୍କର ଯେମିତି ଜୀବିକା ନିର୍ବାହରେ କୌଣସି ଅସୁବିଧା ନ ହେବ, ସେଥିପାଇଁ ଆମ ଦୁହିଁଙ୍କ ଭିତରେ



ଗୋଟାଏ ବୁଝାମଣା ହୋଇଛି ଯେମିତି କି ଆମ ଉଭୟଙ୍କ ଉପରେ ଗ୍ରାମବାସୀମାନେ ନିର୍ଭର କରିବାକୁ ବାଧ୍ୟ ହେବେ । ତାହା ନ ହେଲେ ଗାଁ ଲୋକେ ଆମ ଭିତରୁ ଜଣକର ପୃଷ୍ଠପୋଷକତା କରିବେ, ଅନ୍ୟ ଜଣକୁ ହୁଏତ ଗାଁ ଛାଡ଼ିବାକୁ ପଡ଼ିବ !"

ଏ କୈଫିୟତ ଶୁଣି ମଗର-ରୂପୀ ଠୋ ଠୋ ହସିବାକୁ ଆରମ୍ଭ କଲା । କିନ୍ତୁ କାଖରେ ଯନ୍ତ୍ରଣା ହେବାରୁ ସେ ହସ ବନ୍ଦ କରି ବିରକ୍ତ ଭାବ ପ୍ରକାଶ କରି କହିଲା, "ଧୂର୍ତ୍ତ ବୈଦ୍ୟ, ଏଥର ମୋ ପୋଷାକର ଲଜ୍ଜା ଛାଡ଼ ମୋ ସାମ୍ନାରେ ଆସି ଠିଆ ହ ।"

ଖାରନାରାୟଣ ଡରି ମରି ଆଗକୁ ଆସିଲେ । ହାତୀ ଆଡ଼କୁ ଅନାଇ ତାଙ୍କର ମନେ ହେଲା, ଏଇଟା ହାତୀ ବେଶରେ ରାକ୍ଷସ ନୁହେଁ ତ ? ନହେଲେ ଗୋଟାଏ ହାତୀ କେବେ ଗଣ୍ଡାଏ ଛଅଟା ହାତୀଙ୍କୁ ମାରି ତଡ଼ି ଦେଇ ପାରନ୍ତା ?

"ଅବାକ୍ ହୋଇ ଦେଖୁଛୁ କ'ଣ ? ଶୀଘ୍ର ଏ ଭଙ୍ଗା ତୀରବାଣ ବାହାର କରି ଔଷଧ ଦେଇ ମୋତେ ସୁସ୍ଥ କର । ବହୁତ ବିଳମ୍ବ ହେଲାଣି ।" ମଗର-ରୂପୀ ରୁକ୍ଷ କଣ୍ଠରେ ଆଦେଶ ଦେଲା ।

"ମହାଶୟ ! ତୀରବାଣ ବାହାର କରି ଆଣିବା ସଙ୍ଗେ ସଙ୍ଗେ ଔଷଧ ନ ଲଗାଇଲେ ରକ୍ତସ୍ରାବ ହୋଇ ଆପଣଙ୍କୁ ହାଲିଆ କରିଦେବ । ଚରକା-ବୃକ୍ଷ ତ ଔଷଧ ସଂଗ୍ରହ କରିବାକୁ ଯାଇ ଫେରୁ ନାହାନ୍ତି । କରିବା କ'ଣ ? ମୁଁ ସେଇଆ ଭାବି ଡେରି କରୁଛି । ନହେଲେ ଆପଣଙ୍କୁ ମୋତେ ମୋ କର୍ତ୍ତବ୍ୟ ମନେ ପକାଇ ଦେବାକୁ ପଡ଼ନ୍ତା ନାହିଁ ।" ଖାରନାରାୟଣ କହିଲେ ।

"ମୋର ଚିକିତ୍ସା କରିବାକୁ ଯାଇ ଯଦି ମୋତେ ବିପଦରେ ପକାଇବୁ ତେବେ ତୋତେ ପ୍ରାଣରୁ ମାରି ଦେବି । ବୁଝିଲୁ ? ଚାଲ, ଚରକାବୃକ୍ଷ କୁଆଡ଼େ ଗଲା ଦେଖିବା । ବାଘ ଭାଲୁ ତାକୁ ଦେଇ ଭୋଜି ମାରିଥିଲେ ଅନ୍ତତଃ ତା କଙ୍କାଳ ଦେଖିବାକୁ ମିଳିବ ।" ମଗର-ରୂପୀ କହିଲା ।

ତା'ପରେ ସେ ଯେଉଁ ଦିଗରୁ ଚରକାବୃକ୍ଷଙ୍କ

ଚିତ୍କାର ଶୁଭିଥିଲା ସେହି ଦିଗକୁ ଯିବାକୁ ନିଜ ହାତୀ ଜଳଗ୍ରହକୁ ଇଙ୍ଗିତ ଦେଲା ।

ତେଣେ ତରକାଗ୍ନିଶିଖଙ୍କ ଦୁର୍ଦ୍ଦଶା କଥା କହିଲେ ନସରେ । ସେ ଅନେକ ଖୋଜାଖୋଜି ପରେ ଗୋଟାଏ ଗଛ ମୂଳରେ ଆବଶ୍ୟକୀୟ ଚେରମୂଳର ସନ୍ଧାନ ପାଇ ତାକୁ ଖୋଳିବାକୁ ବସିଲା ବେଳକୁ ଗୋଟିଏ ଅଘଟଣ ଘଟିଗଲା । ଯେଉଁ ଗଛ ମୂଳରେ ସେ ବସିଥିଲେ ସେ ଗଛ ଡାଳରେ ଛନ୍ଦି ରହିଥିଲା ଗୋଟିଏ ଅଜଗର । ସେ ଦୁଇ ଦିନ ହେଲା କୌଣସି ଆହାର ପାଇ ନ ଥିଲା । ସେହି ଭୋକିଲା ଅବସ୍ଥାରେ ତରକାଗ୍ନିଶିଖଙ୍କୁ ଦେଖି ସେ ଆନନ୍ଦରେ ତାଙ୍କ ଉପରକୁ ଖସି ଆସିଲା ।

ତରକାଗ୍ନିଶିଖ ପ୍ରଥମେ ଭାବିଲେ ଯେ ଯେମିତିକି ଗଛଡାଳଟାଏ ତାଙ୍କ ଉପରେ ଖସି ପଡ଼ୁଛି । ସେ ଉଠି ପଡ଼ି ତାକୁ ଖସାଇ ପକାଇବାକୁ ଚେଷ୍ଟା କରିବାକୁ ଯାଇ ଦେଖନ୍ତି ତ ତାଙ୍କ ହାତ ଗୋଡ଼ ପ୍ରାୟ ଚଳୁ ନାହିଁ । ସେ ନିଜ ଦେହକୁ ଅନାଇ ଯେତେବେଳେ ବୁଝିଲେ ଯେ ସେ ଗୋଟାଏ ଭୟଙ୍କର ଅଜଗର ଦ୍ୱାରା କବଳିତ ହୋଇଛନ୍ତି, ସେ ଚିତ୍କାର କରି ଉଠିଲେ, "ମୋତେ ରକ୍ଷାକର, ରକ୍ଷାକର !"

ତରକାଗ୍ନିଶିଖଙ୍କର ସେ ଚିତ୍କାର ଗାଁ ଆଗର କ୍ଷେତ ପାଖରେ ଜମା ହୋଇଥିବା ଗ୍ରାମବାସୀମାନେ ଶୁଣିଥିଲେ । ଅନ୍ୟ ଦିଗରେ ଯେତେବେଳେ ଜୟଶୀଳ ଓ ସାଧକ ବୃଦ୍ଧା ଭିତରୁ ପ୍ରାପ୍ତ ତାଳପତ୍ର ପୋଥି ଖଣ୍ଡିକ ଧରି ରାଜକୁମାର ରାଜ-





ଗନ୍ଧର୍ବ ବା କିନ୍ନର ଜାତିଙ୍କ କେହି ତାହା କରିଛି ।"

"ତମେ ଯେଉଁ ଜାତିର ଜୀବମାନଙ୍କ କଥା କହୁଛ, ସେମାନଙ୍କ ଭିତରୁ କେହି ହେଉ ବା ନ ହେଉ, ଦେଖାଯାଉଥିବା ଏ ଜୀବ ଯେ ମଣିଷ ନୁହେଁ, ଏଥିରେ ସନ୍ଦେହ ନାହିଁ । ତା' ହାତୀକୁ ଦେଖ । ଦେଖିବା ତ ଦୂରର କଥା, ଏଭଳି ହାତୀ କଥା ମୁଁ କେବେ ଶୁଣି ମଧ୍ୟ ନାହିଁ ।" ଜୟଶୀଳ ଉତ୍ତେଜିତ ଭାବରେ କହିଲେ ।

ସେତିକିବେଳେ ପୁଣି ଥରେ ଚରକାସ୍ବାମୀଙ୍କ ଚିତ୍କାର ଶୁଭିଲା । ଜୟଶୀଳ ପାଟି କରି କହିଲେ, "ଭୟ ନାହିଁ । ତମକୁ ରକ୍ଷା କରିବା ପାଇଁ ଆମେ ଆସି ଯାଇଛୁଁ ।" ଏହା କହି ସେ ଚିତ୍କାର ଆସୁଥିବା ଗଛ ପାଖକୁ ଦୌଡ଼ିଲେ ।

"ଜୟଶୀଳ ! ତମେ ଇଏ କ'ଣ କରୁଛ ? ରାଜପୁତ୍ର ରାଜକନ୍ୟାଙ୍କ ଅପହରଣକାରୀକୁ ଆଗରେ ପାଇ ମଧ୍ୟ ତାକୁ ଧରିବାର ଚେଷ୍ଟା ନକରି ତମେ କୌଣସି ଗୋଟିଏ ଜଙ୍ଗଲି ଲୋକକୁ ସାହାଯ୍ୟ କରି ସମୟ ନଷ୍ଟ କରିବାକୁ ଯାଉଛ ?" ସାଧକ କହିଲେ ।

"ସାହାଯ୍ୟ ନ କଲେ ହୁଏତ ଲୋକଟି ମରିଯିବ । ରାଜପୁତ୍ର ରାଜକନ୍ୟାଙ୍କର ଏଇ ଅଳ୍ପ ସମୟ ଭିତରେ କୌଣସି ବିଶେଷ କ୍ଷତି ହୋଇଯିବ ବୋଲି ମୋର ମନେ ହୁଏନା ।" ଏହା

କନ୍ୟାଙ୍କ ଅପହରଣକାରୀର ସନ୍ଧାନ ନେବାକୁ ସେ ଆଡ଼କୁ ଆସୁଥିଲେ ।

ଜୟଶୀଳ ଓ ସାଧକ ଚରକାସ୍ବାମୀଙ୍କ ଚିତ୍କାର ଶୁଣି ପାରିଲେ, କିନ୍ତୁ ତାଙ୍କୁ ଦେଖି ପାରୁନଥିଲେ । ଧ୍ଵନି ଲକ୍ଷ୍ୟ କରି ଆଗକୁ ଯାଇ ସେମାନେ ଦେଖିଲେ ଅଦୂରରେ ବଣୁଆ ହାତୀ ପଲ ସହ ତ୍ରିଶୂଳ ଧରି ମଗର-ରୂପୀ ଲଢ଼େଇ କରୁଛି । ମଗର-ଚଢ଼ିଥିଲା ବିଚିତ୍ର ହାତୀଟିଏ ।

ସାଧକ ଅଧୈର୍ଯ୍ୟ ଭାବରେ ଜୟଶୀଳକୁ କହିଲେ, "ରାଜା କନକାକ୍ଷଙ୍କ ପୁତ୍ର କନ୍ୟାକୁ ଏଇ ପିଶାଚ ଟେକିନେଇ ନେଇଛି ନିଶ୍ଚୟ । ମୁଁ ତ ପୂର୍ବରୁ କହିଥିଲି, ତାହା ମଣିଷର କାମ ନୁହେଁ । ଯକ୍ଷ,

କହି ଜୟଶୀଳ କ୍ଷିପ୍ର ଗତିରେ ଅଗ୍ରସର ହେଲେ । ସାଧକ ବି ଅଗତ୍ୟା ତାଙ୍କ ପଛେ ପଛେ ଦୌଡ଼ିଲେ ।

ସେମାନେ ଯାଇ ଯେତେବେଳେ ଚରକାଗୁଣୀଙ୍କ ପାଖରେ ପହଞ୍ଚିଲେ, ସେତେବେଳକୁ ସାପ ତାଙ୍କ ଦେହଯାକ ଗୁଡ଼ାଇ ହୋଇଯାଇ ତାଙ୍କ ମୁଣ୍ଡ ଗିଳିବାକୁ ଉଦ୍ୟତ । ଚରକାଗୁଣୀ ସମ୍ପୂର୍ଣ୍ଣ ଅସହାୟ । ତାଙ୍କ ଅଙ୍ଗୁଳିଗୁଡ଼ିକ ଥରୁଥିବାରୁ ସେ ବଞ୍ଚିଛନ୍ତି ବୋଲି ଜଣାଯାଉ ଥିଲି ଯାହା ।



ଜୟଶୀଳ ତରବାରି ଉଦ୍ୟତ କରି ଅଜଗରର ମୁଣ୍ଡ କାଟିପକାଇବାକୁ ଉଦ୍ୟତ ହୋଇ ମଧ ହଠାତ୍ କିଛି କରିପାରିଲେ ନାହିଁ । କାଳେ ତାଙ୍କ ତରବାରି ଚରକାଗୁଣୀଙ୍କ ଦେହରେ ଲାଗିବ, ସେ ଭୟ ଥିଲି । ଏଣେ ଅଜଗର ପ୍ରବଳ ଶକ୍ତି ସହକାରେ ଚରକାଗୁଣୀଙ୍କୁ କାବୁ କରି ରଖିଥାଏ ।

"ଜୟଶୀଳ ! ଇଏ ଜଣେ ଶିକ୍ଷିତ ଭଦ୍ରଲୋକ ପରି ମନେ ହେଉଛନ୍ତି । ସେ ଯାହା ହେଉ, ତମେ କାଳବିଳମ୍ବ ନକରି ଅଜଗରକୁ ତୁରନ୍ତ ମାରି ଦିଅ ।" ସାଧକ ଚରକାଗୁଣୀଙ୍କ ବିକଳ ଅବସ୍ଥା ଦେଖି ବ୍ୟାକୁଳ କଣ୍ଠରେ କହିଲେ ।

ଜୟଶୀଳ ଅଜଗରର ମୁଣ୍ଡକୁ ବାମ ହାତରେ ଝିଙ୍କାରି ଧରି ତାକୁ ପଛ ପଟରୁ ତରବାରିରେ ଆଘାତ କଲେ । ଅଜଗର ଛଟପଟ କରିବାକୁ ଲାଗିଲି । କ୍ରମେ ଚରକାଗୁଣୀ ଉପରୁ ତା ବନ୍ଧନ ଶିଥିଳ ହୋଇଗଲି ଓ ସେ ତଳେ ଖସି ପଡ଼ିଲି ।

ଅଜଗର ପଡ଼ିଯିବା ମାତ୍ରେ ଚରକାଗୁଣୀ ବି ତଳେ କଚୁଡ଼ି ହୋଇ ପଡ଼ୁଥିଲେ । ଜୟଶୀଳ ତାଙ୍କୁ ଧରି ପକାଇ ସାଧକକୁ କହିଲେ, "ତମେ ଶୀଘ୍ର ଯାଇ ପାଣି ନେଇ ଆସ । ଏ ଲୋକର ଜ୍ଞାନ ନ ଥିଲେ ବି ସେ ମରି ନାହିଁ ।"

ସାଧକ ଦୌଡ଼ି ଯାଇ ଅଳ୍ପ ଦୂରର ଗୋଟିଏ ପୋଖରୀରୁ କମଣ୍ଡଳୁରେ ପାଣି ନେଇ ଆସିଲେ । ଜୟଶୀଳ ଚରକାଗୁଣୀ ମୁହଁ ଉପରେ ପାଣି ସିଞ୍ଚିବାରୁ ସେ ଆଖି ଖୋଲି ପଚାରିଲେ, "ମୁଁ କେଉଁଠି ? ମୁଁ ବଞ୍ଚିଛି ତ ? ମୁଁ କ'ଣ ଅଜଗର ପେଟ ଭିତରେ ରହିଛି ?"

"ତମେ ଜରୁର୍ ବଞ୍ଚିଛ । ଏ ମନ୍ତ୍ରଜଳ ପିଇ ପକାଅ । ଠିକ୍ ହୋଇଯିବ ।" ସାଧକ ଏହା କହି ଚରକାଗୃହସ୍ଥଙ୍କୁ ପାଣି ପିଆଇ ଦେଲେ ।

ସେ ଯାଏ ଚରକାଗୃହସ୍ଥ ପୁରାପୁରି ପ୍ରକୃତିସ୍ଥ ହୋଇ ନଥାନ୍ତି । ସେ ଚାରିଆଡ଼କୁ ବଲ ବଲ କରି ଚାହିଁ ପଚାରିଲେ, "ଆପଣମାନେ କିଏ ? ମଗର-ରୂପୀ ମହାଶୟ କାହାନ୍ତି ? ୱାରକାଗୟଣ କୁଆଡ଼େ ଗଲେ ?"

ଚରକାଗୃହସ୍ଥ କାହା କଥା କହୁଛନ୍ତି ସେକଥା ଜୟଶୀଳ ଆନ୍ଦାଜ କରି ନେଲେ । ସେ ସାଧକଙ୍କୁ କହିଲେ, "ଶୁଣୁଛ ଏହାଙ୍କ କଥା ? ସେ ବଚନ ଗଜାରୋହୀ ସହ ଏହାଙ୍କର କିଛି ସମ୍ପର୍କ ରହିଛି ।" ଏହା ପରେ ସେ ଚରକାଗୃହସ୍ଥଙ୍କୁ ପଚାରିଲେ, "ତୁମ ନାମ କ'ଣ ? ତମେ କ'ଣ ସେ ମଗର-ରୂପୀର ଅନୁଚର ?"

ଚରକାଗୃହସ୍ଥ ତଥାପି ବଲବଲ କରି ଏଆଡ଼େ ସେଆଡ଼େ ଅନାଇବାକୁ ଲାଗିଲେ । ଜୟଶୀଳ ଓ ସାଧକଙ୍କୁ ସେ ପୂର୍ବରୁ ଦେଖି ନ ଥିବା ହେତୁ ସେମାନେ ହଠାତ୍ କୁଆଡ଼ୁ ଆସିଗଲେ । ସେକଥା ସେ ଚିନ୍ତା କରିବାକୁ ଲାଗିଲେ । ଜୟଶୀଳ ଅପେକ୍ଷାକୃତ ଗମ୍ଭୀର ଗଳାରେ ପୁନର୍ବାର ନିଜ ପ୍ରଶ୍ନର ପୁନାବୃତ୍ତି କଲେ ।

ଚରକାଗୃହସ୍ଥ ଉତ୍ତର ଦେବା ପୂର୍ବରୁ ଗଛ ସେପଟେ ମଗର-ରୂପୀ ଆସି ହାଜର୍ ହୋଇଗଲା ଓ କହିଲା, "ଇଏ ଚରକାଗୃହସ୍ଥ । ମୋର ଚାକର । ତମେମାନେ କିଏ ? ମୋ ପ୍ରଶ୍ନର ସିଧା ସଳଖ ଉତ୍ତର ନ ଦେଲେ ମୋର ଏ ହାତୀ ଜଳଗ୍ରହ ତମମାନଙ୍କୁ ପାଦରେ ମକଚି ପେଣ୍ଡୁ ବନାଇ ଦେବ !"

ଜୟଶୀଳ ଓ ସାଧକ ଉଠି ଠିଆ ହୋଇ ପଡ଼ିଲେ । ଜୟଶୀଳଙ୍କ ହାତ ନିଜ ତରବାରୀ ଉପରକୁ ଚାଲିଗଲା । ସାଧକ ନିଜ ଦଣ୍ଡ ଟେକି ଧରିଲେ ।

(କ୍ରମଶଃ)






# ଦଣ୍ଡର ଅଧିକାରୀ

ରାଜା ବିକ୍ରମାର୍କ ପୁଣି ବିଶାଳ ବୃକ୍ଷ ଆରୋହଣ କରି, ଶବଟିକୁ ଉତାରି ଆଣି କାନ୍ଧରେ ପକାଇ ବାଟ ଚାଲିବାକୁ ଆରମ୍ଭ କଲେ । ସେତେବେଳେ ମୃଦୁ ମୃଦୁ ବର୍ଷା ହେଉଥାଏ; ଦୂରରେ ବଜ୍ରପାତ ହେଉଥାଏ ଓ ହୁ ହୁ ଶୀତଳ ପବନ ବହୁଥାଏ । ମଧ୍ୟେ ମଧ୍ୟେ ଅଶରୀରୀମାନଙ୍କର ଅଟ୍ଟହାସ୍ୟ ଶୁଭୁଥାଏ । ବିଜୁଳି ଆଲୁଅରେ ଭୟଙ୍କର ମୁହଁମାନ ଝଲସି ଉଠୁଥାଏ ।

ହଠାତ୍ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ ଯେ ତୁମର କୌଣସି ବିଶ୍ୱସ୍ତ କର୍ମଚାରୀ ହାତରେ ଏ କଠିନ କାମର ଦାୟିତ୍ୱ ନ ଦେଇ ନିଜେ ଯେ ଏହାକୁ ତୁଲାଉଛ, ଏଥିପାଇଁ ତୁମେ ପ୍ରଶଂସାଯୋଗ୍ୟ । କାରଣ ଅତ୍ୟନ୍ତ ବିଶ୍ୱାସୀ କର୍ମଚାରୀମାନେ ମଧ୍ୟ ଥରେ ଥରେ ବିପରୀତ ଆଚରଣ କରିବାର ଦୃଷ୍ଟାନ୍ତ ରହିଛି । ଗୋଟାଏ ଘଟଣା କହୁଛି; ଶୁଣ । ଶୁଣିଲେ ଶ୍ରମ ଲାଘବ ହେବ ।"

ବେତାଳ ଗପିଲା:

## ବେତାଳ କଥା



ପ୍ରାଚୀନ କାଳରେ ଶାସନ କରୁଥିଲେ ଗୁଣସିଂହ ନାମରେ ରାଜା । ତାଙ୍କ ରାଜ୍ୟରେ ନିୟମ କାନୁନ୍ ଉପରେ ଖୁବ୍ ଗୁରୁତ୍ୱ ଆରୋପଣ କରାଯାଉଥିଲା । ଚୋରି ଦୁର୍ନୀତି ଇତ୍ୟାଦି ପାଇଁ କଠୋର ଦଣ୍ଡ ଦିଆ ଯାଉଥିଲା । ପ୍ରଜାମାନେ ସୁଖରେ ଥିଲେ ।

ରାଜା ଗୁଣସିଂହ ଛଦ୍ମ ବେଶରେ ରାଜ୍ୟତମାମ୍ ବୁଲି ଅପରାଧୀମାନଙ୍କୁ ନିଜେ ଧରୁଥିଲେ । ଥରେ ଛଦ୍ମ ବେଶରେ ନାରାୟଣପୁର ନାମକ ଏକ ଅଞ୍ଚଳକୁ ଯାଇ ଶୁଣିଲେ ଯେ ସେଠାକାର ବିଚାରପତି ଲାଞ୍ଚଖୋର । ଏହାର ସତ୍ୟାସତ୍ୟ ଜାଣିବା ନିମନ୍ତେ ରାଜା ଏକ ନାଟକ ରଚନା କଲେ । ସେ ଓ ମନ୍ତ୍ରୀ ଉଭୟେ ବଣିକ ଛଦ୍ମ ବେଶରେ ସେଠାକୁ ଯାଇ ପରସ୍ପର ବିବାଦ ଲାଗିଥିବାର ଅଭିନୟ କଲେ ଓ ବିଚାରାଳୟରେ ପହଞ୍ଚିଲେ । ମିଛ ବିବାଦକୁ ସେମାନେ ଏପରି ଭାବରେ ରଚିତ କଲେ, ଯାହାଦ୍ୱାରା ରାଜାହିଁ ଅପରାଧୀ ବୋଲି ସ୍ପଷ୍ଟ ଜଣାଯିବ । ବିଚାରକ ସବୁ ଶୁଣି ସେମାନଙ୍କୁ ପର ଦିନ ଆସିବାକୁ ନିର୍ଦ୍ଦେଶ ଦେଲେ ।

ରାତିରେ ଛଦ୍ମବେଶୀ ରାଜା ବିଚାରକଙ୍କୁ ଭେଟି ଶହେ ମୋହର ଦେଇ ତାଙ୍କର ପକ୍ଷରେ ରାୟ ଶୁଣାଇବାକୁ ଅନୁରୋଧ କଲେ । ବିଚାରପତି ତାହାହିଁ କଲେ ।

ରାୟ ଶୁଣିବା ମାତ୍ରେ ରାଜା ଓ ମନ୍ତ୍ରୀ ନିଜ ନିଜ ଛଦ୍ମବେଶ ତ୍ୟାଗ କରି ବିଚାରପତିଙ୍କୁ ବନ୍ଦୀ କରି ରାଜଧାନୀକୁ ନେଇ ଆସିଲେ । ସେଠାରେ ରାଜା ବିଚାରପତିଙ୍କୁ ମୃତ୍ୟୁଦଣ୍ଡ ଆଦେଶ ଦେଲେ । ସେ ଆଦେଶ କାର୍ଯ୍ୟକାରୀ ବି ହୋଇଗଲା ।

ଏ ଘଟଣାରେ ଅନେକେ ବ୍ୟଥିତ ହେଲେ । ଲାଞ୍ଚ ନେବା ଯୋଗୁ ମୃତ୍ୟୁଦଣ୍ଡ ଅନେକଙ୍କୁ ଅନ୍ୟାୟ ବୋଲି ମନେ ହେଲା ।

କିନ୍ତୁ ମୃତ ବିଚାରପତିଙ୍କ ପୁତ୍ର ବିଷ୍ଣୁଗୁପ୍ତ ରାଜାଙ୍କର ସମାଲୋଚନା କଲେ ନାହିଁ । ସେ ଥିଲେ ଖୁବ୍ ଆଦର୍ଶବାଦୀ । ରାଜା ଦେଶରେ ଉଚ୍ଚ ନୈତିକତା ପ୍ରବର୍ତ୍ତନ କରିବା ପାଇଁ ଏ ଭଳି କଡ଼ା ଦଣ୍ଡ ବିଧାନ କରିଛନ୍ତି ବୁଝି ସେ ରାଜାଙ୍କ ନୀତିର ସମର୍ଥନହିଁ କଲେ । ଆଦର୍ଶ ଦୃଷ୍ଟିରୁ ରାଜାଙ୍କର ଏପରି ଦଣ୍ଡ ଦେବାର ଅଧିକାର ଅଛି ବୋଲି ସେ କହୁଥାନ୍ତି ।

କେଇ ବର୍ଷ ପରେ ବିଷ୍ଣୁଗୁପ୍ତ ନିଜ ଶିକ୍ଷା ସମାପ୍ତ କରି ରାଜ ଦରବାରରେ ଜଣେ କର୍ମଚାରୀ ରୂପେ ନିଯୁକ୍ତ ହେଲେ । ନିଜ ନିଷ୍ଠା, ଆଦର୍ଶ ଓ ପରିଶ୍ରମ ଯୋଗୁଁ ସେ ଶୀଘ୍ର ରାଜାଙ୍କର ଜଣେ ବିଶେଷ ପରାମର୍ଶଦାତା ରୂପେ ଗଣ୍ୟ ହେଲେ ।

ହଠାତ୍ ପଡ଼ୋଶୀ ଦେଶର ରାଜା ସେ ଦେଶ ଆକ୍ରମଣ କଲେ । ସେ ଆକ୍ରମଣକୁ ସାମନା କରିବା ପାଇଁ ରାଜା ଗୁଣସିଂହ ପ୍ରସ୍ତୁତ ନ ଥିଲେ । ସେ ତେଣୁ ଶତ୍ରୁ ରାଜାକୁ ପ୍ରତ୍ୟକ୍ଷ ସମରରେ ନ କୌଶଳ କ୍ରମେ ମାରିବାକୁ ଷଡ଼ଯନ୍ତ୍ର କଲେ । ଶତ୍ରୁ ରାଜାଙ୍କର ଜଣେ ଦେହରକ୍ଷୀ ଲକ୍ଷେ ମୁଦ୍ରା ପାଇଲେ ନିଜ ରାଜାଙ୍କୁ ତାଙ୍କ ଶିବିରରେ ହତ୍ୟା କରିବାର ପ୍ରତିଶ୍ରୁତି ଦେଲା ।

ରାଜା ଗୁଣସିଂହ ବିଷ୍ଣୁଗୁପ୍ତଙ୍କୁ ସବୁ କହି ତାଙ୍କର ହାତରେ ଦେହରକ୍ଷୀ ପାଖକୁ ଟଙ୍କା ପଠାଇଲେ ।

ବିଷ୍ଣୁଗୁପ୍ତ ଚୁପ୍‌ଚାପ୍ ସବୁ ଶୁଣିଲେ ଓ ଟଙ୍କା-ତକ ଗ୍ରହଣ କରି ଶତ୍ରୁ ଶିବିର ଆଡ଼କୁ ଗଲେ । କିନ୍ତୁ ଦେହରକ୍ଷୀ ନିକଟକୁ ଯିବା ପରିବର୍ତ୍ତେ ସେ ସିଧା ଶତ୍ରୁ ରାଜାଙ୍କ ପାଖକୁ ଗଲେ ଓ ତାଙ୍କ ଶରଣ ପଶିଲେ । ରାଜା ଗୁଣସିଂହଙ୍କ ପକ୍ଷର ସବୁ ଦୁର୍ବଳତା ବିଷ୍ଣୁଗୁପ୍ତଙ୍କୁ ମାଲୁମ୍ ଥିଲା । ତେଣୁ ତାଙ୍କ ସହାୟତା ପାଇ ଶତ୍ରୁ ପକ୍ଷ ଅକ୍ଳେଶରେ ଗୁଣସିଂଙ୍କୁ ପରାଜିତ କଲେ ।

ଯୁଦ୍ଧରେ ଶତ୍ରୁପକ୍ଷର ପ୍ରତିନିଧି ଭାବରେ ସ୍ୱୟଂ ବିଷ୍ଣୁଗୁପ୍ତହିଁ ଗୁଣସିଂହଙ୍କୁ ହତ୍ୟା କଲେ । ହତ୍ୟା କଲାବେଳେ ସେ କହିଲେ ଯେ ସେ ନିଜ ପିତୃ-ହତ୍ୟାର ପ୍ରତିଶୋଧ ନେଉଛନ୍ତି !

ଏହାପରେ ବିଜୟୀ ରାଜା ବିଷ୍ଣୁଗୁପ୍ତଙ୍କୁ ହିଁ ସେ ରାଜ୍ୟର ରାଜା କରି ବାହୁଡ଼ି ଗଲେ । ବିଷ୍ଣୁ-



ଗୁପ୍ତ ଶୀଘ୍ର ଜଣେ ଆଦର୍ଶ ଶାସକ ଭାବରେ ଖ୍ୟାତି ଲାଭ କଲେ । ତେବେ ତାଙ୍କ ରାଜୁତିରେ ଅପରାଧୀ ନିଜ ଅପରାଧର ମାତ୍ରା ଅନୁପାତରେ ହିଁ ଦଣ୍ଡ ପାଉଥାଏ । କାହାକୁ ଅଧିକ ଦଣ୍ଡ ପାଇ-ବାକୁ ପଡ଼ୁ ନ ଥାଏ ।

ବେତାଳ କାହାଣୀଟି ଏଇଠାରେ ଶେଷ କରି ପ୍ରଶ୍ନ କଲା, "କୁହ ରାଜା, ବିଷ୍ଣୁଗୁପ୍ତ ମୂଳରୁ ହିଁ ପିତୃହତ୍ୟାର ପ୍ରତିଶୋଧ ନେବାକୁ ସ୍ଥିର କରିଥିଲା ନା ହଠାତ୍ ସେ ସିଦ୍ଧାନ୍ତ ନେଲା ? ସେ କ'ଣ ସେ ଲକ୍ଷେ ଟଙ୍କା ଆତ୍ମସାତ୍ କରିବା ଉଦ୍ଦେଶ୍ୟରେ ଏପରି କଲା ? ନା ରାଜ୍ୟ ଲୋଭରେ ? ପିତୃହତ୍ୟାର ପ୍ରତିଶୋଧ ତ ସେ ବହୁ ଆଗରୁ ନେଇ ପାରି-ଥା'ନ୍ତା ! ରାଜାଙ୍କ ଅନ୍ତରଙ୍ଗ ପରାମର୍ଶଦାତା ଭାବରେ ସେ ରାଜାଙ୍କୁ ବଧ କରିବାର ବହୁ ସୁଯୋଗ ତ ପୂର୍ବରୁ ପାଇଥିବ ! ତୁମେ ଯଦି ଏସବୁ ପ୍ରଶ୍ନର ଉତ୍ତର ଜାଣିଛ, ତେବେ କହି ଦିଅ । ଜାଣିକରି ନ କହିଲେ ତୁମ ଶିର ବିଦୀର୍ଣ୍ଣ ହୋଇଯିବ ।"

ବିକ୍ରମାର୍କ ଉତ୍ତର ଦେଲେ: "ପ୍ରଥମରୁ ବିଷ୍ଣୁ-ଗୁପ୍ତ ରାଜାଙ୍କର ଅନୁରକ୍ତ ହିଁ ଥିଲେ । ତାଙ୍କର ବିଶ୍ୱାସ ଥିଲା ରାଜା ଆଦର୍ଶବାଦୀ ଓ ସେହି ଆଦର୍ଶ-ବାଦ ଯୋଗୁଁ ହିଁ ତାଙ୍କ ପିତାଙ୍କୁ ପ୍ରାଣଦଣ୍ଡ ଦେଇଥିଲେ । ହଠାତ୍ ସେ ଦେଖିଲେ, ରାଜା ମୋଟେ ଆଦର୍ଶବାଦୀ ନୁହନ୍ତି । ଶତ୍ରୁ ରାଜାର ଦେହରକ୍ଷୀକୁ ଲାଞ୍ଚ ଦେଇ ସେ ରାଜାଙ୍କୁ ବିଶ୍ୱାସ-ଘାତକତା ସହକାରେ ମାରିବା ଆଦର୍ଶବାଦୀର କାମ ହୋଇ ନ ପାରେ । ଏ ଧାରଣା ହେବା ସଙ୍ଗେ ସଙ୍ଗେ ସେ ଅନୁଭବ କଲେ ଯେ ତାଙ୍କ ପିତାଙ୍କୁ ଯେତେବେଳେ ଆଦର୍ଶଦୃଷ୍ଟିରୁ ପ୍ରାଣଦଣ୍ଡ ଦିଆ ହୋଇନାହିଁ ସେତେବେଳେ ତାହା ଦଣ୍ଡ ନୁହେଁ, ହତ୍ୟା । ପିତୃହତ୍ୟାର ପ୍ରତିଶୋଧ ନେବା ଯୋଗ୍ୟ ପୁତ୍ରର କର୍ତ୍ତବ୍ୟ ବୋଲି ବିଶ୍ୱାସ କରି ବିଷ୍ଣୁଗୁପ୍ତ ଶତ୍ରୁ ପକ୍ଷରେ ଯୋଗ ଦେଲେ ।"

ରାଜାଙ୍କର ମୌନଭଙ୍ଗ ହେବା ମାତ୍ରେ ବେତାଳ ଶବ ସହି ଖସିଯାଇ ପୂର୍ବୋକ୍ତ ବୃକ୍ଷ ଡାଳରେ ଝୁଲି ପଡ଼ିଲା । ରାଜା ପୁଣି ସେ ବୃକ୍ଷ ଆଡ଼କୁ ଧାବିତ ହେଲେ ।

(କଳ୍ପିତ)





# ଜ୍ଞାନୋଦୟ

ଅନେକ ଦିନ ପୂର୍ବେ କଳିଙ୍ଗ ଦେଶରେ ମଳୟସିଂହ ନାମକ ଜଣେ ରାଜା ଥିଲେ । ସେ ରାଜ୍ୟର ପଡ଼ୋଶୀ ରାଜ୍ୟ ବଙ୍ଗ ଦେଶରେ ରାଜସିଂହ ନାମକ ଜଣେ ରାଜା ଥିଲେ । ଦୁଇ ରାଜ୍ୟର ରାଜା ଓ ପ୍ରଜାମାନଙ୍କ ମଧ୍ୟରେ ଖୁବ୍ ଭଲ ସମ୍ପର୍କ ତଥା ସହଯୋଗ ମନୋଭାବ ଥିଲା ।

ପରେ ଅଙ୍ଗରାଜା ଚନ୍ଦ୍ରବର୍ମା ବଙ୍ଗ ରାଜ୍ୟ ଆକ୍ରମଣ କଲେ ଓ ରାଜସିଂହଙ୍କ ବୀରତ୍ୱପୂର୍ଣ୍ଣ ଯୁଦ୍ଧ ସତ୍ତ୍ୱେ ତାଙ୍କୁ ପରାଜିତ କଲେ । ରାଜସିଂହ ସେଠାରୁ ଯାଇ ମଳୟସିଂହଙ୍କ ଆଶ୍ରୟ ନେଲେ । ପ୍ରକୃତରେ ରାଜସିଂହ ଜଣେ ଦକ୍ଷ ଶାସକ ନ ଥିଲେ; ବଙ୍ଗ ଦେଶର ପରାଜୟକୁ ଅବଶ୍ୟ କଳିଙ୍ଗ ନିଜର ପରାଜୟ ଭାବରେ ସ୍ୱୀକାର କଲା ଏବଂ ମଳୟସିଂହ ରାଜସିଂହଙ୍କୁ ସହାନୁଭୂତି ଦେଖାଇଲେ ସତ, କିନ୍ତୁ କୌଣସି ପ୍ରତିକ୍ରିୟା ନ ଦେଖାଇ ଚୁପ୍ ହୋଇ ରହିଲେ । ଅବଶ୍ୟ ଚାହିଁଥିଲେ ସେ ପ୍ରତିଶୋଧ ନେଇ ପାରିଥା'ନ୍ତେ ।

ପରେ ମଳୟସିଂହ ଛଦ୍ମ ବେଶରେ ନିଜର ଦେହରକ୍ଷୀଙ୍କ ସହିତ ବଙ୍ଗ ରାଜ୍ୟକୁ ଗଲେ । ସେଠି ସେ ଦେଖିଲେ ଜନତାଙ୍କ ଭିତରେ କୌଣସି ଅସନ୍ତୋଷ ନାହିଁ । ନୂଆ ରାଜା ଚନ୍ଦ୍ରବର୍ମାଙ୍କ ପ୍ରତି ଜନତାଙ୍କର କୌଣସି ବିଦ୍ୱେଷ ନ ଥିଲା ବା ପରାଜିତ ରାଜସିଂହ ପାଇଁ କୌଣସି ଦୁଃଖ ନ ଥିଲା । ସମସ୍ତେ ନିଜ ନିଜ କାର୍ଯ୍ୟରେ ଏପରି ବ୍ୟସ୍ତ ଥିଲେ ଯେ ଜଣାଯାଉଥିଲା ଯେପରି କିଛି ଘଟିନି ।

ଏମିତି କେତେ ଦିନ ଚାଲିଗଲା । ରାଜସିଂହ ଲକ୍ଷ୍ୟ କଲେ ମଳୟସିଂହ ତାଙ୍କର ହୃତ ରାଜ୍ୟ ଫେରାଇ ଆଣିବା ପାଇଁ କୌଣସି ପ୍ରଚେଷ୍ଟା କରୁନାହାନ୍ତି । ଏଇଟା ତାଙ୍କୁ ବଡ଼ ବାଧିଲା, ସେ

ଆଉ ଜଣେ ପଡ଼ୋଶୀ ରାଜାଙ୍କ ପାଖକୁ ଗଲେ ଏବଂ ତାଙ୍କଠାରୁ କିଛି ସୈନ୍ୟ ସଂଗ୍ରହ କରି ଚନ୍ଦ୍ରବର୍ମାଙ୍କ ଉପରେ ଆକ୍ରମଣ କଲେ ଓ ହାରିଲେ ।

ଏହି ଘଟଣାରୁ ଚନ୍ଦ୍ରବର୍ମା ଜାଣିପାରିଲେ ଯେ କୌଣସି ଶକ୍ତିଶାଳୀ ରାଜା ରାଜସିଂହଙ୍କର ସହାୟତା କରୁନାହାନ୍ତି । ସେ ଏକମାତ୍ର ମଳୟସିଂହଙ୍କୁ ଡରୁଥିଲେ । କିନ୍ତୁ ଏଥର ସେ ଜାଣିଲେ ଯେ ସେ ତାଙ୍କର ସହାୟତା କରୁନାହାନ୍ତି ।

ତେଣୁ ସେ ବଙ୍ଗ ରାଜ୍ୟର ଶାସନଯନ୍ତ୍ର ବଦଳାଇଲେ ଓ ନୂଆ ଆଇନ୍ ସବୁ ପ୍ରବର୍ତ୍ତନ କଲେ । ଶାସନ କ୍ଷେତ୍ରରେ ସବୁ ବଡ଼ ବଡ଼ ଆସନରେ ଅଙ୍ଗବାସୀମାନେ ରହିଲେ । ଅଙ୍ଗରେ ଉତ୍ପାଦିତ ହେଉଥିବା ଜିନିଷସବୁ ଏଠାରେହିଁ ବିକ୍ରି ହେଲା । ଅନ୍ୟସବୁ ଅବସ୍ଥା ମଧ୍ୟ ଏପରି ଭାବରେ ହେଲା ଯେ କ୍ରମେ ବଙ୍ଗ ରାଜ୍ୟରୁ ସବୁ ନିଜ ଦେଶକୁ ନେଇ ଅଙ୍ଗ ଉନ୍ନତିଲାଭ କଲା ଓ ବଙ୍ଗ ରାଜ୍ୟର ପ୍ରଜାମାନେ ଗରିବ ହୋଇଗଲେ । ଏଣେ ଅଙ୍ଗବାସୀମାନଙ୍କର ସୁଖସୁବିଧା କ୍ରମେ ବଢ଼ିବାକୁ ଲାଗିଲା । ଫଳତଃ ବଙ୍ଗ ରାଜ୍ୟର ପ୍ରଜାମାନଙ୍କର ଅସନ୍ତୋଷ ବଢ଼ିବାକୁ ଲାଗିଲା ।

ବଙ୍ଗ ରାଜ୍ୟର କେତେ ଜଣ ରାଜଭକ୍ତ ସଚେତନ ନାଗରିକ ନିଜ ନିଜର ଅସନ୍ତୋଷ ରାଜାଙ୍କ ଆଗରେ ପ୍ରକାଶ କଲେ । ଚନ୍ଦ୍ରବର୍ମା ଜାଣିଲେ ଏମାନେ ରହିଲେ ତାଙ୍କ ଶାସନଯନ୍ତ୍ରରେ ବାଧା ଉପୁଜିବ । ତେଣୁ ସେ କୌଣସି



ନା କୌଣସି ଛୋଟିଆ ମୋଟିଆ କାରଣରୁ ଦୋଷାରୋପ କରି ଜଣକ ପରେ ଜଣଙ୍କୁ ମୃତ୍ୟୁ-ଦଣ୍ଡ ଦେଲେ ।

ଏକଥା ଜନତାଙ୍କ ମଧ୍ୟରେ ଅଶାନ୍ତି ସୃଷ୍ଟି କଲା । କେହି ବା କଳିଙ୍ଗ ଦେଶକୁ ଯାଇ ମଳୟ-ସିଂହଙ୍କୁ ପ୍ରକୃତ ଅବସ୍ଥା ବିଷୟରେ ଖବର ଦେଲେ ଓ ଜନତାଙ୍କୁ ଚନ୍ଦ୍ରବର୍ମାଙ୍କ ଶାସନରୁ ରକ୍ଷା କରିବାକୁ ନିବେଦନ କଲେ । କିନ୍ତୁ ମଳୟ-ସିଂହ ଚୁପ୍ ହୋଇ ରହିଲେ ଓ କୌଣସି ସନ୍ତୋଷଜନକ ଉତ୍ତର ଦେଲେ ନାହିଁ । ତେଣୁ ସେମାନେ ଅତ୍ୟନ୍ତ ଦୁଃଖିତ ହୋଇ ନିଜ ଦେଶକୁ ଲେଉଟି ଆସିଲେ ଏଇ କଥା ଭାବି ଯେ ଯଦି ମଳୟସିଂହ ସେମାନଙ୍କୁ ଉପେକ୍ଷା କରନ୍ତି ତ ତାଙ୍କୁ ଆଉ ରକ୍ଷା କରିବାବାଲା କେହି ନାହିଁ ।

ତା'ପରେ ସାଧାରଣ ପ୍ରଜା ଓ ଯୁବକମାନେ ମଧ୍ୟ ବିଦ୍ରୋହ କଲେ । ଚନ୍ଦ୍ରବର୍ମା ବହୁତ କ୍ରୂରତା ସହିତ ସେହି ବିଦ୍ରୋହ ଦମନ କଲେ ।

ସେହି ସମୟରେ ମଳୟସିଂହ ପୁଣି ଛଦ୍ମ-ବେଶରେ ବଙ୍ଗ ରାଜ୍ୟକୁ ଗଲେ । ସେଠାରେ ଦେଖିଲେ ଗୋପନ ଭାବରେ ଜନତା ରାଜାଙ୍କ ବିରୋଧରେ ବିଦ୍ରୋହର ଆୟୋଜନ କରୁଛନ୍ତି; ଶାସନ ପକ୍ଷୀୟ ଲୋକ ଓ ଜନତାଙ୍କ ମଧ୍ୟରେ ସଂଘର୍ଷ ମଧ୍ୟ ଘଟୁଛି ।

ଏହି ସୁବିଧା ପାଇ ମଳୟସିଂହ ହଠାତ୍ ଚନ୍ଦ୍ର-ବର୍ମାଙ୍କ ରାଜ୍ୟକୁ ଚାରିପଟୁ ଆକ୍ରମଣ କଲେ । ହଠାତ୍ ଏପରି ଘଟିବାରୁ ଚନ୍ଦ୍ରବର୍ମା କିଛି କରି-



ପାରିଲେ ନାହିଁ । ଜନତା ଯେତେବେଳେ ଜାଣିଲେ ଯେ ମଳୟସିଂହ ଆକ୍ରମଣ କରିଛନ୍ତି ସେମାନେ ଖୁସି ହୋଇ ନିଜ ନିଜର ଗୋପନ ବିଦ୍ରୋହ ବାହାରେ ପ୍ରକଟ କଲେ । ଫଳତଃ ଚନ୍ଦ୍ରବର୍ମାଙ୍କର ରାଜତନ୍ତ୍ର ସମ୍ପୂର୍ଣ୍ଣ ଧ୍ୱଂସ ପାଇଲା ଓ ସେ ମଳୟସିଂହଙ୍କ ହାତରେ ବନ୍ଦୀ ହେଲେ ।

ମଳୟସିଂହ ଏହି ଅବସରରେ ରାଜସିଂହଙ୍କୁ ଡାକି ତାଙ୍କୁ ତାଙ୍କ ରାଜ୍ୟ ସମର୍ପଣ କରି ବୁଝାଇଲେ, "ବନ୍ଧୁ, ବର୍ତ୍ତମାନ ବୁଝ ତୁମେ ହାରି ଯାଇ ମୋର ଆଶ୍ରୟ ଗ୍ରହଣ କଲାବେଳେ କାହିଁକି ମୋର କୌଣସି ପ୍ରତିକ୍ରିୟା ନ ଥିଲା । ସେତେବେଳେ ପ୍ରଜାମାନଙ୍କ ମନରେ ଚନ୍ଦ୍ରବର୍ମାଙ୍କ ଶାସନ ଯୋଗୁଁ କୌଣସି କଷ୍ଟ ଦୁଃଖ ନ ଥିଲା । ସେଥିରୁ ମୁଁ ବୁଝିଲି ତୁମ ପ୍ରତି ପ୍ରଜାଙ୍କର ଆଦର ବା ଶ୍ରଦ୍ଧା ନାହିଁ । ସେଇଠାହିଁ ଥିଲା ତୁମର ଭୁଲ । ମୁଁ ହୁଏତ ପ୍ରଥମରୁହିଁ ରାଜ୍ୟଟି ଚନ୍ଦ୍ରବର୍ମାଠାରୁ ଛଡ଼ାଇ ଆଣି ତୁମକୁ ଦେଇ ପାରିଥା'ନ୍ତି ଯେହେତୁ ତୁମେ ମୋର ବନ୍ଧୁ । କିନ୍ତୁ ତଦ୍ୱାରା ତୁମର ଓ ପ୍ରଜାଙ୍କର ବୁଝାମଣା ଦିଗରେ କୌଣସି ସମାଧାନ ହୋଇ ନଥା'ନ୍ତା ବା ସେମାନେ ନିଜେ କେବେ ମଧ୍ୟ ଆତ୍ମରକ୍ଷା ପାଇଁ ଯତ୍ନବାନ ହୁଅନ୍ତେ ନାହିଁ । ବର୍ତ୍ତମାନ ପ୍ରଜା ସବୁକିଛି ବୁଝିଗଲେଣି ଓ ତୁମେ ସେହି ଚେତନଶୀଳ ପ୍ରଜାମାନଙ୍କୁ ଭବିଷ୍ୟତରେ ଶାସନ କରିବ । ତୁମେ ମଧ୍ୟ ଯଥେଷ୍ଟ ସଚେତନ ହୋଇଛ । ଏବେ ଆଉ କେହି ତୁମ ରାଜ୍ୟକୁ ଜୟ କରିପାରିବ ନାହିଁ ।"

ଏକଥା ଶୁଣି ରାଜସିଂହ ବହୁ ପଶ୍ଚାତ୍ତାପ କଲେ; କାରଣ ସେ ମଳୟସିଂହଙ୍କ ଉଦାର ହୃଦୟକୁ ଠିକ୍ ଭାବରେ ବୁଝିପାରି ନ ଥିଲେ । ଏଣିକି ସେ ଜନତାଙ୍କ ସହାୟତାରେ ପୂର୍ବାପେକ୍ଷା ଅଧିକ ଭଲ ଭାବରେ ଶାସନ କାର୍ଯ୍ୟ ଚଳାଇଲେ ।

କ୍ରମେ ରାଜସିଂହ ଅତ୍ୟନ୍ତ ଲୋକପ୍ରିୟ ହୋଇ ଉଠିଲେ । ସେ କହନ୍ତି, "ସଙ୍କଟରେ ପଡ଼ିଲି ବୋଲି ମୋ କର୍ତ୍ତବ୍ୟ ଶିଖିଲି !"



ସଂସାରର ବିସ୍ମୟ :

# ଜିଆସ୍ ମନ୍ଦିରର ଧ୍ୱଂସାବଶେଷ

ପ୍ରାଚୀନ କାଳରେ ଏଥେନ୍ସ୍‌ଠାରେ ଗ୍ରୀକ୍‌ମାନଙ୍କ ଦ୍ୱାରା ନିର୍ମିତ ସେମାନଙ୍କ ପ୍ରଧାନ ଦେବତା ଜିଆସ୍‌ଙ୍କ ମନ୍ଦିରର ଭଗ୍ନାବଶେଷ ଆଜି ଏହିପରି ଦେଖିବାକୁ ମିଳେ । ଜିଆସ୍ ଜଣେ ପ୍ରାଚୀନ ଆର୍ଯ୍ୟ ଦେବତା ବୋଲି କେହି କେହି ଐତିହାସିକ କହନ୍ତି । ଏକଦା ପ୍ରଳୟ ବେଳେ ଏହି ସ୍ଥାନ ପର୍ଯ୍ୟନ୍ତ ସମୁଦ୍ର ପ୍ଲାବନ ଘଟିଥିଲା ବୋଲି କୁହାଯାଏ ।





# ଶ୍ରୀପତିର ଦୂରଦୃଷ୍ଟି

ଶ୍ରୀପତି ସ୍ୱଭାବରେ ଟିକିଏ ଭୁରୁଭୁରିଆ ଥିଲା । ଯେତେବେଳେ ଯାହା ହଠାତ୍ ମୁଣ୍ଡକୁ ଯୁଟିଲା ଆଗପଛ ନ ବିଚାରି ତାହା କରି ପକାଉଥିଲା । ସ୍ତ୍ରୀ କମଳା ପଡ଼ୋଶୀମାନଙ୍କ ଆଗରେ କଥା ପ୍ରସଙ୍ଗରେ କହୁଥିଲା, "ମୋ ସ୍ୱାମୀଙ୍କର ଦୂରଦୃଷ୍ଟି ବୋଲି କିଛି ନାହିଁ । ଆଗପଛ ବିଚାରି ନକରି ଏମିତି କିଛି କରି ବସିବେ ଯେଉଁଥିରେ ସବୁ ଅଡ଼ୁଆ ଆସି ତାଙ୍କର ମୁଣ୍ଡ ଉପରେ ପଡ଼ିବ । ତାଙ୍କୁ ବାହା ହୋଇଥିବାରୁ ମୋତେ ବି ସେଥିରୁ କିଛି ଫଳ ଭୋଗ କରିବାକୁ ହୁଏ ।" ଏକଥା ଶ୍ରୀପତି ମନରେ ବୋଧେ ଟିକେ ଆଘାତ ଦେଲା । ତେଣୁ ସେ ମନେ ମନେ ଦୃଢ଼ ନିଷ୍ପତ୍ତି କଲା ଯେ ଏଣିକି ସେ ଯାହା କରିବ ସବୁବେଳେ ଭବିଷ୍ୟତ ଭାବିହିଁ କରିବ ।

ଥରେ ପାଖ ଗାଁରେ ଗୋଟିଏ ମେଳା ହେଉଥିଲା । ତାକୁ ଦେଖିବାକୁ ଶ୍ରୀପତି ଯାଇଥାଏ ସଞ୍ଜ ପର୍ଯ୍ୟନ୍ତ ସବୁ ବୁଲି ବୁଲି ଦେଖିଲା । ସଞ୍ଜ ହେବାରୁ ଯାହା ଯାହା କିଣିବାର ଥିଲା କିଣି ଫେରି ଆସିବା ବାଟରେ ଦେଖିଲା ମିଠାଇ ଦୋକାନ ପାଖରେ ତାଙ୍କ ଗାଁ ଜମିଦାରଙ୍କର ପାଞ୍ଚବର୍ଷର ପୁଅ ଠିଆ ହୋଇଛି ।

ସେ ପିଲାଟି ପୂର୍ବଦିନରୁ ଘରୁ ଖେଳିବାକୁ ବାହାରି ଆସି ଆଉ ଫେରି ନାହିଁ । ଜମିଦାର ବ୍ୟସ୍ତ ହୋଇ ଚାରିଆଡ଼କୁ ତାଙ୍କ ଚପରାଶିମାନଙ୍କୁ ପଠାଇଲେ । ସେତିକିବେଳେ ଶ୍ରୀପତି ଜମିଦାରଙ୍କ ଘର ହୋଇ ମେଳା ଦେଖିବାକୁ ଯାଇଥିଲା । ଜମିଦାର ଅନ୍ୟ କେତେ ଭଦ୍ରବ୍ୟକ୍ତିଙ୍କୁ କହିବାର ସେ ଶୁଣିଥିଲା, "ଯିଏ ମୋ ପୁଅକୁ ସୁରକ୍ଷିତ ଅବସ୍ଥାରେ ଆଣି ଦେବ ତାକୁ ଶହେ ଏକଟଙ୍କା ପୁରସ୍କାର ଦେବ ।" ସେତେବେଳେ ସେ କଥା



ଉପରେ ସେ କିଛି ଗୁରୁତ୍ୱ ଦେଇ ନଥିଲା । କିନ୍ତୁ ବର୍ତ୍ତମାନ ପିଲାଟିକୁ ଦେଖିବାରୁ ତା'ର ସବୁ ମନେ ପଡ଼ିଗଲା ।

ସେ ପିଲାଟିକୁ ତତ୍‌କ୍ଷଣାତ୍ କାଖେଇ ପକେଇ କହିଲା, "କିରେ, ମିଠାଇ ଖାଇବୁ ?" ସିଏ ହଁ କଲା ।

ଶ୍ରୀପତି ପାଞ୍ଚଟଙ୍କା ଖର୍ଚ୍ଚ କରି ଖୁବ୍ ଶିଘ୍ର ମିଠାଇ ଓ କିଛି ଖେଳଣା ପିଲାଟି ପାଇଁ କିଣିଲା । ତା'ପରେ ତାକୁ କାଖେଇ ଆସି ଘରେ ପହଞ୍ଚି କବାଟରେ ଶବ୍ଦ ଦେଲା ।

କମଳା କବାଟ ଖୋଲି ପଚାରିଲା, "ଏ ଛୁଆ କିଏ ? ତାକୁ କାହିଁକି ମେଳାରୁ ଧରି ଆସିଛ ? ଏ ଛୁଆ ପାଇଁ ଏତେ ପଇସା ଖର୍ଚ୍ଚ କରି ଏସବୁ ଖେଳଣା କିଣିଛ ବା କାହିଁକି ?"

ଶ୍ରୀପତି ରାଗିଯାଇ କହିଲା, "ଆରେ, ମତେ ଭିତରକୁ ଆସିବାକୁ ଦେବ ତ ? ତା'ପରେ ସବୁ କହୁଛି ଶୁଣ, ଇଏ ହେଉଛି ଜମିଦାରଙ୍କର ପୁଅ; ହଜିଯାଇ ଥିଲା । ଏହାକୁ ଖୋଜି ଆଣି ଦେଲେ ସେ ଶହେ ଏକଟଙ୍କା ପୁରସ୍କାର ଦେବେ ବୋଲି ଘୋଷଣା କରିଥିଲେ ।"

କମଳା ମୁହଁ ଛିଞ୍ଚାଡ଼ି କହିଲା "ସେତେ ଟଙ୍କା ପାଇଲେ ବି ଲଭ କ'ଣ ? କାମାକ୍ଷୀ ପିନ୍ଧିଥିବା ଶାଢ଼ୀ ପରି ଶାଢ଼ୀ ତ ତମେ କିଣି ଦେବ ନାହିଁ ! ଆଚ୍ଛା, ପିଲାଟିକୁ ଏଠାକୁ ଆଣି କାହିଁକି ଆସିଲ ? ସିଧା ଜମିଦାରଙ୍କ ଘରକୁ ନେଇଗଲ ନାହିଁ ?"

"ତୁମ ମୁଣ୍ଡରେ ଗୋବର ଅଛି । ତୁମର ଦୂରଦୃଷ୍ଟି ନାହିଁ । ସିଧା ନେଇ ଦେଇ ଦେଲେ ସେ ଯଦି ଧମକେଇ ବିଦାୟ କରିଦିଅନ୍ତି ? ଆମର ସାକ୍ଷୀ ବା କିଏ ? ସକାଳ ହେବା ମାତ୍ରେ ଭଦ୍ର-ଲୋକମାନଙ୍କୁ ସଙ୍ଗରେ ନେଇ ଗଲେ ଠୁପ୍‌ଠାପ୍ ଟଙ୍କା ଦେଇ ଦେବେ ।" ଶ୍ରୀପତି ବୁଝାଇଲା ।

ସ୍ୱାମୀଙ୍କର ଦୂରଦୃଷ୍ଟି କଥା ଭାବି କମଳା ମୁଗ୍ଧ ହେଲା । ଛୁଆଟି ଖିଆପିଆ କରି କିଛି ସମୟ ଖେଳିଲା ଓ ପରେ ଶୋଇଗଲା । ଶ୍ରୀପତି ମଧ୍ୟ ଛୁଆଟି ପାଖରେହିଁ ଶୋଇଲା; କାଳେ ସେ କୁଆଡ଼େ ପୁଣି ପଳେଇଯିବ ।

ଖୁବ୍ ଭୋର୍‌ରୁ ଶ୍ରୀପତି ଘର କବାଟ କିଏ ବାଡ଼େଇଲା ଓ ଶ୍ରୀପତି ଆଖି ମଳି ମଳି ଯାଇ କବାଟ ଖୋଲିଲା । ଆଗରେ ସୁରଜଣ ପିଆଦାଙ୍କୁ ଦେଖି ସେ ଟିକିଏ ଇତସ୍ତତଃ ହେଲା । ସେମାନେ ଶ୍ରୀପତିକୁ ଧକ୍‌କା ମାରି ଭିତରକୁ ଯାଇ ଜମି-ଦାରଙ୍କ ପୁଅକୁ ଦେଖିଲେ । ସେମାନେ କହିଲେ, "ଚାଲ ରାଜାଙ୍କ ପାଖକୁ । ତମେ ଅସଲ ପିଲାଚୋର ବୋଲି କିଏ ଜାଣିଥିଲା ? କାଲି ଏଠୁ ସେଠୁ ପଚାରି ବୁଝିଲା ବେଳକୁ ତମେହିଁ ମେଳାରୁ ଏହାକୁ ଉଠାଇ ନେଇ ଚାଲି ଆସିଛ !"

ଶ୍ରୀପତିର ମୁହଁ ଫିକା ପଡ଼ିଗଲା । ସେ କହିଲା, —"ମେଳାରେ ପିଲାଟିକୁ ଦେଖି ଜମିଦାରଙ୍କୁ ଦେବା ପାଇଁହିଁ ମୁଁ ନେଇ ଆସିଛି । ମୁଁ ପୂର୍ବଦିନରୁହିଁ ଶୁଣିଥିଲି ସେ ପିଲାଟି କୁଆଡ଼େ ଚାଲିଯାଇଛି ।"

ପିଆଦାମାନେ କହିଲେ, "ପିଲାଟି ଖେଳିବାକୁ ଯାଇ କାହା ଘରେ ଶୋଇ ପଡ଼ିଥିଲା । ପୁଣି ଅଳ୍ପସମୟ ପରେ ସେ ମିଳିଗଲା ମଧ୍ୟ । ପୁଣି ଯେତେବେଳେ କାଲି ଜମିଦାରଙ୍କ ସମଗ୍ର ପରିବାର ମେଳା ଦେଖିବାକୁ ଯାଇଥିଲେ, ସେତିକବେଳେହିଁ କେଉଁଠି ହଜିଗଲା । ଯଦି ତମେ ତାକୁ ଆଣିଥିଲ, ତେବେ ସଙ୍ଗେ ସଙ୍ଗେ କାହିଁକି ତାଙ୍କୁ ଦେଲ ନାହିଁ ? ତମେ ନିଶ୍ଚୟ କିଛି ମନ୍ଦ ଉଦ୍ଦେଶ୍ୟ ରଖି ପିଲାକୁ ଘରେ ଲୁଚାଇଛ ।" ଶ୍ରୀପତି ଯେତେ ବୁଝାଇଲା ଯେ ତା'ର କୌଣସି ମନ୍ଦ ଉଦ୍ଦେଶ୍ୟ ନ ଥିଲା, ପିଆଦାମାନେ ସେଥିରେ କାନ ନ ଦେଇ ତାକୁ ବଳପୂର୍ବକ ରାଜାଙ୍କ ପାଖକୁ ନେଇ ଗଲେ ।

ସେଠାରେ ଯାଇ ଶ୍ରୀପତି ଅନେକ ସମୟ ଚେଷ୍ଟା କରି ବୁଝାଇ ନିଜକୁ ନିର୍ଦ୍ଦୋଷୀ ସାବ୍ୟସ୍ତ କଲା । ଶ୍ରୀପତି ଘରକୁ ଫେରିବା ପରେ ପରେ ସ୍ତ୍ରୀ ପୁରୁଣା ଅଭ୍ୟାସ ମୁତାବକ କହିଲା, "ତୁମର ଆଦୌ ଦୂରଦୃଷ୍ଟି ନାହିଁ । ଥିଲେ ଆମ ଅବସ୍ଥା କେବେଠୁଁ ବଦଳି ଯାଆନ୍ତାଣି !"



# କୃପଣର ସତର୍କତା

ଏକ ଗ୍ରାମରେ ଥିଲେ ଗୋଟିଏ ବ୍ରାହ୍ମଣ ଦମ୍ପତି । ସେମାନଙ୍କର ଆୟ ଯଥେଷ୍ଟ ଥିବା ସତ୍ତ୍ୱେ ଖର୍ଚ୍ଚ କିଛି ନ ଥିଲା । କିନ୍ତୁ ଦୁହେଁ ଏଡ଼େ କୃପଣ ଥିଲେ ଯେ ପେଟ ଭରି ଖାଉ ନ ଥିଲେ ।

ଥରେ ସେ ଗାଁରେ ଗୋଟିଏ ମେଳା ବସିଲା । ମେଳା ଉପଲକ୍ଷ୍ୟେ କାଳେ ଦୂର ଗାଁରୁ କେହି ବନ୍ଧୁବାନ୍ଧବ ଆସି ତାଙ୍କ ଅତିଥି ହେବେ, ଏ ସମ୍ଭାବନାରେ ବ୍ରାହ୍ମଣ ବାହ୍ମଣୀ ଆତଙ୍କ ଅନୁଭବ କଲେ ।

"କେହି ଆସିଲେ ଆମେ ଦୁହେଁ ବେମାର ପଡ଼ିଥିବାର ଛଳନା କରିବା ।" ବ୍ରାହ୍ମଣୀ ପ୍ରସ୍ତାବ ଦେଲା ।

ମେଳାର ପ୍ରଥମ ଦିନହିଁ ବ୍ରାହ୍ମଣ ଦୁଇଜଣ ବନ୍ଧୁ ମେଳାରେ ପଶିବାର ଦୂରରୁ ଦେଖିଲା । ସନ୍ଧ୍ୟା ବେଳକୁ, ବନ୍ଧୁ ଦୁଇଜଣ ବ୍ରାହ୍ମଣ ଘରେ ପହଞ୍ଚିଥିବା ବେଳକୁ ବ୍ରାହ୍ମଣ ବ୍ରାହ୍ମଣୀ 'ବେମାର' ପଡ଼ିଛନ୍ତି !

"ଆମର ଆଉ ମେଳା ଦେଖିବା ପାଇଁ ରହିବା ଦରକାର ନାହିଁ । ଏ ବିଚରା ଦୁହିଁଙ୍କୁ ଦେଖିବାକୁ କେହି ନାହିଁ । ଅନ୍ୟ ବନ୍ଧୁବାନ୍ଧବଙ୍କୁ ଖବର ଦେବା ଦରକାର !" କହି ଦୁଇ ଅତିଥି ଲେଉଟି ଗଲେ ।

ପର ଦିନ ବିଭିନ୍ନ ସ୍ଥାନରୁ ଦଶ ବାରଜଣ କୁଣିଆ ବ୍ରାହ୍ମଣ ବାହ୍ମଣୀଙ୍କୁ ଦେଖିବାକୁ ଆସି ପହଞ୍ଚି ଗଲେ । ସେ ଦୁହେଁ ଭଲ ଥିବାର ଦେଖି ସେମାନେ ଆନନ୍ଦରେ ବ୍ରାହ୍ମଣ ଘରେ ସପ୍ତାହେ ରହି ମେଳା ଶେଷ ହେବା ପରେ ନିଜ ନିଜ ଘରକୁ ବାହୁଡ଼ିଲେ !



# କାନଫୁଲ ହେବାର ନୋହଲା

ଗୋବିନ୍ଦାଚାର୍ଯ୍ୟ ନାମକ ଜଣେ ଆୟୁର୍ବେଦ ବୈଦ୍ୟ ନିଜ ଗାଁରେ ଜୀବିକାର୍ଜନର କୌଣସି ଉପାୟ ନ ଦେଖି ପରିବାର ଧରି ଗାଁ ଛାଡ଼ି ସହରକୁ ଚାଲି ଆସିଲେ । ଜଣେ ବଡ଼ ଲୋକଙ୍କ ଘରେ ଗୋଟିଏ ଶ୍ରେଷ୍ଠ ପ୍ରକୋଷ୍ଠ ଭଡ଼ା ନେଇ ଔଷଧ ବିକି କୌଣସି ମତେ ପରିବାର ଚଳାଇଲେ ।

ଦିନେ ବୈଦ୍ୟଙ୍କ ପତ୍ନୀ କହିଲେ, "ଆମ ଅବସ୍ଥାର କିଛି ତ ପରିବର୍ତ୍ତନ ହେଲା ନାହିଁ । ଏ ଘରର ମାଲିକକୁ ଦେଖ ତ ! ରାତିରେ ଦହି ଛଡ଼ା ଖାଲିଭାତ ଖା'ନ୍ତି ନାହିଁ !"

"ତେବେ ତ ମୁଁ ଶୀଘ୍ର ତୁମର କାନଫୁଲ ଗଢ଼ାଇ ଦେବି !" ବୈଦ୍ୟ କହିଲେ ।

ବୈଦ୍ୟଙ୍କ ପ୍ରକୋଷ୍ଠ ଓ ମାଲିକଙ୍କ ପ୍ରକୋଷ୍ଠ ମଧ୍ୟରେ କେବଳ ଗୋଟିଏ କାନ୍ଥ ଥିଲା । ଦିନେ ରାତିରେ ମାଲିକ ତା'ର ସ୍ତ୍ରୀକୁ କହୁଥିଲା, "ଦହିରେ ପକାଇବା ପାଇଁ କିଛି ଲୁଣ ଆଣ ତ !" ବୈଦ୍ୟ ଏକଥା ଶୁଣିପାରି ଧୀରେ ଧୀରେ ନିଜ ସ୍ତ୍ରୀକୁ କହିଲେ—"ତୁମର ଗୋଟିଏ କାନଫୁଲ ଗଲା !" ପରଦିନ ଘରବାଲା କହୁଥାଏ, "ଆରେ, ଦହି ଖଟା ହୋଇ ଯାଇଛି । ଟିକେ ଅଦା ଆଣ ।" ଏକଥା ଶୁଣି ବୈଦ୍ୟ କହିଲେ, "ବର୍ତ୍ତମାନ ତୁମର ଆର କାନଫୁଲଟି ମଧ୍ୟ ଗଲା ।" ବୈଦ୍ୟଙ୍କ ସ୍ତ୍ରୀ କିଛି ବୁଝିପାରିଲେ ନାହିଁ । ତେଣୁ ବୈଦ୍ୟ ବୁଝାଇଲେ, ରାତିରେ ଦହି ଖାଇବା ଶରୀର ପକ୍ଷେ ଭଲ ନୁହେଁ । ମୁଁ ଭାବିଲି ସେ ଏପରି ଖାଇ ବେମାର ହେଲେ ତାକୁ ଔଷଧ ଦେଇ ଯେଉଁ ଟଙ୍କା ପାଇବି ସେଥିରେ ତୁମର କାନଫୁଲ ହେବ । କିନ୍ତୁ ଦହି ସାଙ୍ଗରେ ଲୁଣ ଖାଇଲେ ତା'ର ଅଧେ ଖରାପ ଗୁଣ ନଷ୍ଟ ହୋଇଯାଏ । ପୁଣି ଅଦା ଦେଇ ଖାଇଲେ ତ ପୂରା—ଅର୍ଥାତ୍ ଦହିର ଖରାପ ଗୁଣ କିଛି ଆଉ ରହେ ନାହିଁ । ଏ ରହସ୍ୟ ଯେଉଁ ବ୍ୟକ୍ତିକୁ ଜଣା ସେ କାହିଁକି ଚିକିତ୍ସା ହେବା ପାଇଁ ମୋ ପାଖକୁ ଆସିବ ?''






# କୁସ୍ତିବୀରର ରହସ୍ୟ

ଜଣେ ଜମିଦାର ପାଖରେ ଗୋପାଳଚନ୍ଦ୍ର ନାମକ ପହିଲଓ୍ୱାନ ଥିଲା । ଜମିଦାର କୁସ୍ତି ଦେଖିବାକୁ ବଡ଼ ଭଲ ପାଉଥିଲେ । ପ୍ରତି ପୂର୍ଣ୍ଣିମା ଦିନ ସେ ଗୋପାଳ ସହ କାହାର ନା କାହାର କୁସ୍ତିର ପ୍ରତିଯୋଗିତା କରାଉଥିଲେ । ଗୋପାଳ ସର୍ବଦା ବିଜୟଲାଭ କରୁଥିଲା । ଜମିଦାର ତା' ପାଇଁ ଖୁବ୍ ଗର୍ବ କରୁଥିଲେ । ପ୍ରତିଥର ସେ କୁସ୍ତିରେ ବିଜୟଲାଭ କଲେ ଜମିଦାର ତାକୁ ହଜାରେ ଟଙ୍କା ପୁରସ୍କାର ଦିଅନ୍ତି ।

କେତେ ବର୍ଷ ଚାଲିଗଲା । ଜମିଦାରଙ୍କର କ୍ରମେ ଧାରଣା ହେଲା ଯେ ଗୋପାଳକୁ କେହି କେବେ ହରାଇ ପାରିବେ ନାହିଁ ।

ଦିନେ ଜମିଦାର ଶିକାର କରିବା ନିମନ୍ତେ ବଣକୁ ଯାଇଥାନ୍ତି । ସାଥିରେ ଗୋପାଳ ଯାଇଥାଏ । ଦୁଇ ପହର ଯାଏ ପକ୍ଷୀ ଶିକାର କରି ଓ ବଣ ଭିତରେ ବୁଲି ବୁଲି ଜମିଦାର ଥକି ପଡ଼ିଥାନ୍ତି । ସେ ଗୋଟାଏ ଗଛ ଛାଇରେ ବସି ଇତସ୍ତତଃ ଅନାଇ ଦେଖିଲେ ପାଖରେ ଗୋଟିଏ ଫଳଭରା ଉଦ୍ୟାନ ରହିଛି । ସେ ଗୋପାଳକୁ ନିର୍ଦ୍ଦେଶ ଦେଲେ ସେ ବଗିଚାରୁ କିଛି ଫଳ ସଂଗ୍ରହ କରି ଆଣିବାକୁ ।

ଗୋପାଳ ବଗିଚାରେ ପଶି ଦୁଇ ଚାରିଟା ଫଳ ତୋଳିଛି, ହଠାତ୍ ସେ ଜଣକର ଧମକ ଶୁଣିଲା, "ଆବେ, ମୋତେ ନ ମାଗି ମୋ ଗଛରେ ଚଢ଼ି ଫଳ ତୋଳୁଛି, ଏଡ଼େ ସାହସ କାହାର ?"

ଚାହିଁ ଚାହିଁ ଗୋଟାଏ ଦାଢ଼ିଆ ଲୋକ ବାହାରି ଆସିଲା । ସେ ଗୋପାଳକୁ ଗାଳି ଗୁଲଜ କରୁଥିବାର ଦେଖି ଜମିଦାର ବି ସେଠାରେ ଆସି ପହଞ୍ଚିଲେ ।

ଗଜାନନ

ଗୋପାଳ ଦାଢ଼ିଆକୁ ବୁଝାଉଥାଏ କି ସେ ଫଳ କେଇଟି ଜମିଦାରଙ୍କ ପାଇଁ ତୋଳୁଛି । ତାଙ୍କୁ ଭୋକ ଲାଗିଛି ।

"ଯାହା ପାଇଁ ହେଲେ ବି ପ୍ରଥମେ ମୋର ଅନୁମତି ନେବା ଦରକାର ଥିଲା । ମୋ ଫଳ ବାବଦରେ ହଜାରେ ଟଙ୍କା ଦେଇଦିଅ ।

"କ'ଣ ହେଲା, ଦୁଇ ଚାରିଟା ଫଳ ପାଇଁ ହଜାରେ ଟଙ୍କା ?" ଗୋପାଳ ଆଶ୍ଚର୍ଯ୍ୟ ହୋଇ ପ୍ରତିବାଦ କଲା ।

ମୋର ଅନୁମତି ନ ନେଇ ଫଳ ତୋଳିଛ । ମୋର ଇଚ୍ଛାନୁସାରେ ମୁଁ ଦାମ ଠିକ୍ କରିବି ।" ଦାଢ଼ିଆ କହିଲା ।

ଗୋପାଳ ଭଳି ଜଣେ କୁସ୍ତିବୀର ସହିତ ସାଧାରଣ ଲୋକଟାଏ ଏପରି ଲଗାଇବ, ଏକଥା ଜମିଦାରଙ୍କୁ ଭଲ ଲାଗିଲା ନାହିଁ । ସେ କହିଲେ, "ହଇଓ ବାବୁ, ତମେ ଜାଣ କାହାକୁ ଚିଡ଼ାଉଛ ? ଏ ଜଣେ କୁସ୍ତିବୀର । ଏହାକୁ ଆଜିଯାଏ କେହି ପରାଜିତ କରି ପାରି ନାହାନ୍ତି । ରାଗିଗଲେ ଏ ତମ ହାଡ଼ ଗୁଣ୍ଡା କରିଦେବେ ।"

ଜମିଦାରଙ୍କ କଥା ଶେଷ ହେବା ପୂର୍ବରୁ ଦାଢ଼ିଆ ଗୋପାଳ ଉପରକୁ କୁଦି ପଡ଼ିଲା ଓ ମୁହୂର୍ତ୍ତକେ ତାକୁ ତଳେ ପକାଇ ମାଡ଼ି ବସିଲା । ତା'ପରେ ସେ ଗୋପାଳକୁ ଛାଡ଼ି ଦେଲା ଓ ଟଙ୍କା ବି ମାଗିଲା ନାହିଁ । ଜମିଦାର ଓ ଗୋପାଳ ଘରକୁ ଫେରିଲେ । ଏତେ ବଡ଼ ବୀର ପହିଲୱାନ ଜଣେ ସାଧାରଣ ଲୋକ ପାଖରେ ହାରି



ଯିବାରୁ ଜମିଦାରଙ୍କ ମନରେ ସୁଖ ନ ଥାଏ । ଗୋପାଳ ତାଙ୍କୁ କହୁଥାଏ, "ସେ ଲୋକଟା ମନ୍ତ୍ର-ତନ୍ତ୍ର ଜାଣେ । ନ ହେଲେ ମୋତେ କିଏ ପାରନ୍ତା ?" କିନ୍ତୁ ଜମିଦାର ଏଥିରେ ଆଶ୍ୱସ୍ତ ହେଲେ ନାହିଁ ।

ଦିନେ କୋଡ଼ିଏଟା ଅଣ୍ଡା ସିଝା ଓ ଦୁଇ ସେର ଦୁଧ ପେଟରେ ପୁରାଇ ଗୋପାଳ ଘରୁ ବାହାରିବା ବେଳକୁ ଜଣେ ଲୋକ ଆସି ତାକୁ କହିଲା, "ମୁଁ ଜଣେ କୁସ୍ତିକାର । ଆଗାମୀ କାଲି ପୂର୍ଣ୍ଣିମା । ମୁଁ ଆପଣଙ୍କ ସହ ଲଢ଼ିବି ।"

କୁସ୍ତିର ବ୍ୟବସ୍ଥା ଗୋପାଳ ହିଁ କରୁଥିଲା । ଜମିଦାର ସିଧା ସଳଖ କରୁ ନ ଥିଲେ । ଗୋପାଳ ଲୋକଟିକୁ ଘର ଭିତରକୁ ନେଇ-ଯାଇ କହିଲା, "ତମେ ଲଢ଼ିବ ଯେ, କିନ୍ତୁ ତମେ ଯଦି ଜିତିବ, ତେବେ ଜମିଦାର ତୁମକୁ ଗୋଟାଏ ଦାନବ ସୁଡ଼ଙ୍ଗ ଭିତରକୁ ଯିବାକୁ ଆଦେଶ ଦେବେ। ସେ ସୁଡ଼ଙ୍ଗ ଭିତରୁ କେହି କେବେ ଜୀବିତ ଅବସ୍ଥାରେ ଫେରି ନାହିଁ। ବରଂ ଗୋଟାଏ କାମ କର । କୁସ୍ତିରେ ତମେ ଜାଣି ଜାଣି ହାରି ଯାଅ । ଜମିଦାର ମୋତେ ଯେଉଁ ହଜାରେ ଟଙ୍କା ଦେବେ, ସେଥିରୁ ମୁଁ ତମକୁ ପାଞ୍ଚ ଶହ ଟଙ୍କା ଦେଇଦେବି ।"

ଲୋକଟି ଏଥିରେ ରାଜି ହୋଇଗଲା ।

ପରଦିନ ଯଥାବିଧି କୁସ୍ତିର ଆୟୋଜନ ହେଲା । କିନ୍ତୁ ଦେଖାଗଲା, ନୂଆ ଲୋକଟି ଗୋପାଳକୁ ବେଶ୍ ପାଠ ପଢ଼ାଉଛି । ଗୋପାଳ ତଳେ ପଡ଼ିଯାଇ କହିଲା; "ତମେ ଭୁଲିଗଲ କି ? ତମେ ପରା ହାରିବା କଥା ? ଦାନବ ସୁଡ଼ଙ୍ଗ କଥା ମନେ ଅଛି ତ ?" କିନ୍ତୁ ଲୋକଟି କିଛି ନ ଶୁଣି ଗୋପଳକୁ ହରାଇ ଦେଲା ଓ ପରେ ଜମି-ଦାରଙ୍କୁ କହିଲା, "ଗୋପାଳ କପଟରେ ସବୁ ପ୍ରତି-ଦ୍ୱନ୍ଦୀଙ୍କୁ ଦାନବ ସୁଡ଼ଙ୍ଗର ଭୟ ସାଥିକୁ ପାଞ୍ଚ ଶହ ଟଙ୍କାର ପ୍ରଲୋଭନ ଦେଖାଇ ନିଜେ ଅପରାଜେୟ ରହିଥାଏ, ସେତକ ଦେଖାଇ ଦେବାକୁ ମୁଁ ଆସିଥିଲି । ମୋ ସହ ବଣରେ ଆପଣଙ୍କର ଦେଖା ହୋଇଥିଲା ।"



# ହୀରା ମୁଦି

ଥରେ ଜଣେ ବିଚାରକଙ୍କ ଆଗରେ ଦୁଇଜଣ ଯୁବକ ଆସି ହାଜର ହେଲେ । ଗୋଟାଏ ହୀରା ମୁଦିକୁ କେନ୍ଦ୍ର କରି ଦୁହିଙ୍କ ଭିତରେ ବିବାଦ ଲାଗିଥାଏ । ଉଭୟେ ତାକୁ ନିଜର ବୋଲି ଦାବି କରୁଥା'ନ୍ତି ।

ବିଚାରକ ମୁଦିଟିକୁ ହାତକୁ ନେଇ ହଠାତ୍ ବିସ୍ମୟ ସୂଚକ କଣ୍ଠରେ କହି ଉଠିଲେ, "ଆରେ, ଏ ମୁଦି ତ ରାଜାଙ୍କ ଉଆସରୁ ଚୋରି ଯାଇଥିଲା । ସତ କୁହ, ଏବେ ତମ ପାଖକୁ କିପରି ଆସିଲା ?"

ଏହା ଶୁଣି ଜଣକ ମୁହଁରେ ବିସ୍ମୟ ଓ ଅନ୍ୟଜଣକ ମୁହଁରେ ଆତଙ୍କ ଭାବ ଫୁଟି ଉଠିଲା । ଦ୍ୱିତୀୟ ଜଣକ କହି ପକାଇଲା, "ଆଜ୍ଞା ! ସତ କହିଲେ ଏ ମୁଦି ମୋର ନୁହେଁ, ତା'ର । ଚୋରି କଏ ମୁଁ କଏ !"

କିନ୍ତୁ ପ୍ରଥମ ଜଣକ ବିନୀତ ସ୍ୱରରେ କହିଲା, "ଆଜ୍ଞା ! ଏ ମୁଦି ମୋର । ଚୋରି ଜିନିଷ ନୁହେଁ ।"

ବିଚାରକ ସେ ଯୁବକକୁହିଁ ମୁଦିଟି ଦେଇ ଦେଲେ ଏବଂ ମିଥ୍ୟା ଅଭିଯୋଗ ଆଣିଥିବା ହେତୁ ଦ୍ୱିତୀୟ ଯୁବକକୁ ଦଣ୍ଡ ଦେଲେ ।





# ଯୌତୁକର ସ୍ୱରୂପ

କର୍ମପୁର ଗ୍ରାମରେ ଥିଲେ ଜଣେ ବିଶିଷ୍ଟ ବ୍ୟକ୍ତି, ରୂପନାରାୟଣ । ତାଙ୍କର ଥିଲେ ଦୁଇ ସନ୍ତାନ, ଅଞ୍ଜନ ଓ ଅରୁଣା । ପୁଅ ଅଞ୍ଜନ ସହରରେ ରହି ପଢ଼ୁଥିଲା । ସେଠାରେ ଛାତ୍ରା-ବାସରେ ସେ ଥିଲା ସମସ୍ତଙ୍କର ପ୍ରିୟ ।

ଏଣେ ଘରେ ଅରୁଣାର ବିବାହ ବୟସ ହୋଇଗଲା । ସେ ଥିଲା ଯେମିତି ସୁନ୍ଦରୀ, କାମ-ଦାମରେ ସେମିତି ନିପୁଣା ଓ ରୁଚିଶୀଳା । ପାଠ ବି ପଢ଼ିଥିଲା । ତା' ସ୍ୱଭାବ ଓ ଚରିତ୍ର ମଧ୍ୟ ଥିଲା ଅତି ଉନ୍ନତ । ତା' ଉପଯୋଗୀ ବର ମିଳିବା ସହଜ ନ ଥିଲା ।

ଗାଁରେ ଥିଲେ ହରେନ୍ଦ୍ର ନାମକ ଘଟକ । ରୂପନାରାୟଣ ଦିନେ ହରେନ୍ଦ୍ରଙ୍କୁ ଡାକି ନିଜ ଝିଅ ପାଇଁ ପାତ୍ରଟିଏ ସନ୍ଧାନ କରିବାର ଦାୟିତ୍ୱ ଦେଲେ ।

ସପ୍ତାହଟିଏ ପରେ ହରେନ୍ଦ୍ର ଆସି ରୂପ-ନାରାୟଣଙ୍କୁ କହିଲେ, ପାଞ୍ଚ ମାଇଲ ଦୂରବର୍ତ୍ତୀ ହରିପୁର ଗ୍ରାମର ଚୌଧୁରୀ ପରିବାରରେ ଅରୁଣାର ଉପଯୁକ୍ତ ବର ରହିଛି । ବର ପିତା ଆସି କନ୍ୟା ଦେଖିବା ପରେ ଅନ୍ୟ କଥାବାର୍ତ୍ତା କରିବେ ।

"ବର କରେ କ'ଣ ?" ଅରୁଣାର ମା' ହରେନ୍ଦ୍ରଙ୍କୁ ପଚାରିଲେ ।

"ଆପଣଙ୍କ ପୁଅ ଅଞ୍ଜନ ସହରରେ ଯେଉଁ ବିଦ୍ୟାଳୟରେ ପଢ଼ୁଛି, ବର ପ୍ରବୋଧକୁମାର ସେଇଠି ଶିକ୍ଷକତା କରନ୍ତି ।" ହରେନ୍ଦ୍ର କହିଲେ ।

ନିର୍ଦ୍ଦିଷ୍ଟ ଦିନ ପ୍ରବୋଧକୁମାରର ବାପା ଭୁବନ ଚୌଧୁରୀ କନ୍ୟା ଦେଖିବାକୁ ଆସିଲେ । ଅରୁ-ଣାକୁ ବେଶଭୂଷା କରାଇ ସୁରୁଣା କାଳିଆ ଖଟରେ ଭୁବନ ଚୌଧୁରୀଙ୍କ ଆଗକୁ ଅଣାଗଲା । ଚୌଧୁରୀ କିଛି ସମୟ ଝିଅକୁ ନିରୀକ୍ଷଣ କରି ତା'ପରେ ରୋଷେଇବାସ, କାମଦାମ ସମ୍ପ-ର୍କରେ କିଛି ପ୍ରଶ୍ନ କଲେ । ଅରୁଣା ଯଥାର୍ଥ ଉତ୍ତର

ମାନ ଦେଲା ।

ଅରୁଣା ଘର ଭିତରକୁ ଚାଲିଯିବା ପରେ ଅନ୍ୟାନ୍ୟ ବିଷୟରେ ଆଲୋଚନା ହେଲା ।

ଘଟକ ହରେନ୍ଦ୍ର ଚୌଧୁରୀଙ୍କୁ ପଚାରିଲେ, "କ'ଣ ଆଜ୍ଞା, କନ୍ୟା ପସନ୍ଦ ହେଲା ତ ?"

ଚୌଧୁରୀ ସେ ପ୍ରଶ୍ନର ଉତ୍ତର ନ ଦେଇ କହିଲେ, "ଏ କନ୍ୟା ସହ ମୋ ପୁଅର ବିବାହ ହେବାକୁ ହେଲେ ଆଗେ ଯୌତୁକ କ'ଣ ମିଳିବ ସେତକ ବୁଝିବା ଦରକାର । ଖାଲି କନ୍ୟା ଦେଖିବାକୁ ତ ମୁଁ ଆସିନାହିଁ ! ସବୁକଥା ନିର୍ଣ୍ଣୟ କରିବା ମୋର କର୍ତ୍ତବ୍ୟ । ଆମ ପରିବାର ଏକ ପ୍ରତିଷ୍ଠିତ ପରିବାର । ସେ ପରିବାରର ମର୍ଯ୍ୟାଦା ଅନୁରୂପ ଯୌତୁକ ମିଳିବା ଦରକାର । ମୋ ପୁଅ-ବି ସତ୍ପାତ୍ର । ତେଣୁ କହନ୍ତୁ, ଆପଣ କ'ଣ କ'ଣ ଦେବେ ?"

"ଆପଣ କ'ଣ ଆଶା କରୁଛନ୍ତି ଆଗେ କୁହନ୍ତୁ !" ରୂପନାରାୟଣ ପଚାରିଲେ ।

"ଦେଖନ୍ତୁ, ଆପଣ ନିର୍ଧନ ନୁହନ୍ତି କି ମୋ ପୁଅ ଅଯୋଗ୍ୟ ନୁହେଁ । ତେଣୁ ମୁଁ ଅନ୍ତତଃ ଶହେ ଭରି ସୁନାର ଅଳଙ୍କାର ଓ ଦଶ ହଜାର ନଗଦ ଟଙ୍କା ଆଶା କରିବି । ଅନ୍ୟାନ୍ୟ ଆସ୍-ବାବ ପତ୍ର ତ ନିଶ୍ଚୟ । ଏହାଠୁଁ ଅଧିକ ଦେବା ଭଳି କନ୍ୟାପକ୍ଷ ଅଛନ୍ତି । ତେବେ ଆପଣଙ୍କ କନ୍ୟା ସେସବୁ କନ୍ୟାଙ୍କଠୁଁ ଅଧିକ ଯୋଗ୍ୟ, ମୁଁ ସ୍ୱୀକାର କରିବି । ଆପଣ ଏଥିରେ ରାଜି ହେଲେ ବିବାହ ଆୟୋଜନ ହେଉ ।"

"ଆପଣଙ୍କ ପୁଅ କନ୍ୟା ଦେଖିବା ଦରକାର




ନାହିଁ ?" ରୂପନାରାୟଣ ପଚାରିଲେ ।

ମୁଁ ବଞ୍ଚିଥିବା ଯାଏ ମୋ ଇଚ୍ଛା ଓ ସିଦ୍ଧାନ୍ତ ଉପରେ ପୁଅର କିଛି କହିବାର ନାହିଁ ।" ଚୌଧୁରୀ କହିଲେ ।

"ସମୟ ବଦଳି ଗଲାଣି ଆଜ୍ଞା ! ବର ଥରେ କନ୍ୟା ଦେଖିନେଲେ ତେଣିକି ଆଉ କିଛି ସମସ୍ୟା ନ ଥିବ ।" ହରେନ୍ଦ୍ର କହିଲେ । ଚୌଧୁରୀ ଦିନେ ପୁଅକୁ ପଠାଇବାକୁ ରାଜି ହେଲେ ।

ଗରମ ଛୁଟିରେ ଅଞ୍ଜନ ଘରକୁ ଫେରି ଅପାର ବାହାଘର କଥା ଶୁଣି ଖୁସି ହେଲା । ପ୍ରବୋଧ-କୁମାରଙ୍କୁ ସେ ବିଶେଷ ଶ୍ରଦ୍ଧା କରୁଥାଏ ।

ଦୁଇଦିନ ପରେ ପ୍ରବୋଧକୁମାର କନ୍ୟା ଦେଖିବାକୁ ଆସିଲେ । ସେ ଅଞ୍ଜନକୁ ଦେଖି ବିସ୍ମିତ ହେଲେ । ସେତେବେଳେ ଯାଇ ସେ



ଜାଣିଲେ ଯେ କନ୍ୟା ହେଉଛି ଅଞ୍ଜନର ବଡ଼ ଭଉଣୀ । ଅରୁଣାକୁ ଦେଖି ପ୍ରବୋଧକୁମାର ମୁଗ୍ଧ ହେଲେ । କିନ୍ତୁ ଅଞ୍ଜନ ତାଙ୍କୁ କହିଲା, "ଅସୁବିଧା ହେଲା, ଆପଣଙ୍କ ବାପା ଆମ କ୍ଷମତାର ବହିର୍ଭୂତ ଯୌତୁକ ଦାବୀ କରୁଛନ୍ତି । କ'ଣ କରାଯିବ ?"

"ବାପା ପୁରୁଣାକାଳିଆ ଲୋକ । ସତ କହିଲେ ମୁଁ ଯୌତୁକ ପ୍ରଥାର ଘୋର ବିରୋଧୀ । କିନ୍ତୁ ବାପାଙ୍କ ମୁହଁରେ କିଛି କହିବି, ସେଭଳି ସାହସ ମୋର ନାହିଁ । ଏ ବୟସରେ ତାଙ୍କୁ ଦୁଃଖ ଦେବାକୁ ହୃଦୟ କହୁନାହିଁ । ଏଣେ ଯୌତୁକ ଯୋଗୁଁ ଏ ବିବାହ ଭାଙ୍ଗିଯିବ ଏହା ହୋଇ ପାରେନା । କ'ଣ କରାଯିବ ? ଏ ସମସ୍ୟାର ସମାଧାନ କିପରି ହେବ ?" ପ୍ରବୋଧକୁମାର ଚିନ୍ତିତ ହୋଇ କହିଲେ ।

"ଆମ ସ୍କୁଲର ଶିକ୍ଷକ ସୋମନାଥ ବାବୁ ଜଣେ ଭଲ ଯାଦୁକର । ସେ ହୁଏତ ଏ ବିଗରେ କିଛି ସାହାଯ୍ୟ କରି ପାରନ୍ତି । ଆପଣଙ୍କ ଆପତ୍ତି ନ ଥିଲେ । ମୁଁ ତାଙ୍କୁ ସବୁ କହିବି ।" ଅଞ୍ଜନ କହିଲା । "ମୋର ଆପତ୍ତି ନାହିଁ । କ'ଣ କରୁଛ କର ।" ପ୍ରବୋଧକୁମାର କହିଲେ ।

ଏହାପରେ ବିବାହ ଦିନ ଧାର୍ଯ୍ୟ ହୋଇଗଲା । ରୂପନାରାୟଣଙ୍କୁ ଅଞ୍ଜନ ଓ ସୋମନାଥ କିଛି ଚିନ୍ତା ନ କରିବାକୁ ପରାମର୍ଶ ଦେଇଥାନ୍ତି । ରୂପନାରାୟଣ ଅବଶ୍ୟ ତାଙ୍କ ସାଧ୍ୟ ମୁତାବକ ଅଳଙ୍କାର ପତ୍ର ଓ ନଗଦ ଟଙ୍କାର ବ୍ୟବସ୍ଥା କରିଥାନ୍ତି । କିନ୍ତୁ ଚୌଧୁରୀଙ୍କ ଦାବୀ ତୁଳନାରେ ତାହା ଥିଲା ବହୁତ କମ୍ । ସୋମନାଥ କିପରି ତାଙ୍କୁ ସମସ୍ୟାରୁ ଉଦ୍ଧାର କରିବ ସେକଥା ଭାବିପାରୁ ନ ଥାନ୍ତି ।

ଦିନେ ସୋମନାଥ ଦୁଇଟି ପିତଳ ପାତ୍ର ଧରି ଅଞ୍ଜନ ଘରେ ଆସି ପହଞ୍ଚିଲେ । ପାତ୍ର ଦୁଇଟି ଉପରେ ଢାଙ୍କୁଣି ଥାଏ । ପାତ୍ର ଭିତରେ, ମୁହଁ ଆଡ଼କୁ, ଆଉ ଗୋଟିଏ ଲେଖାଏଁ ଅଗଣ୍ଠିର ପାତ୍ର ଲାଗି ହୋଇ ରହିଥାଏ । ଢାଙ୍କୁଣି ବନ୍ଦ କରି ଥରେ ତାହା ବୁଲାଇ ଦେଇ ଉଠାଇଲେ

ସେ ଅଗସ୍ତିର ପାତ୍ରଟି ଢାଙ୍କୁଣି ସହ ତା'ର ଏକ ଅଂଶ ଭଳି ଉଠି ଆସିବ । ସେତେବେଳକୁ ପାତ୍ରର ପ୍ରକୃତ ଭିତର ଅଂଶ ଦେଖାଯିବ । ଢାଙ୍କୁଣିଟି ଥିବା ବେଳେ ସେ ଅଗସ୍ତିର ପାତ୍ରର ଅସ୍ତିତ୍ୱ ଜଣା ପଡ଼ିବ ନାହିଁ (ଚିତ୍ର ଦେଖନ୍ତୁ) । ଦୁଇଟିଯାକ ପାତ୍ରରେ ଏହିପରି ବ୍ୟବସ୍ଥା ଥିଲା । ପାତ୍ରର ଉପର ଭାଗର ବ୍ୟାସ ପ୍ରାୟ ନଅ ଇଞ୍ଚ । ତଳ ଭାଗର ବ୍ୟାସ ଛଅ ଇଞ୍ଚ । ପାତ୍ର ଦୁଇଟି ମଜା ହୋଇ ଚକ୍‌ଚକ୍ ଦିଶୁଥାନ୍ତି ।

ସୋମନାଥ ପାତ୍ରଟି କି କାମ ଦେବ ସେକଥା ଅଞ୍ଜନ ଓ ପ୍ରବୋଧକୁମାରଙ୍କୁ ବୁଝାଇ ଦେଲେ । ସେମାନେ ସନ୍ତୁଷ୍ଟ ହେଲେ ।

ବିବାହ ଦିନ ପାତ୍ର ଦୁଇଟିର ଢାଙ୍କୁଣି ଖୋଲି, ତହିଁ ଭିତରେ ଥିବା ଅଗସ୍ତିର ପାତ୍ର ଦୁଇଟିର ଉପରେ, ଗୋଟିକରେ ନୋଟ ବିଡ଼ା ଓ ଅନ୍ୟଟିରେ କିଛି ସୁନା ଅଳଙ୍କାର ରଖାଗଲା । ଅଗସ୍ତିର ପାତ୍ରର ଅସ୍ତିତ୍ୱ ସମ୍ପର୍କରେ ଜାଣି ନ ଥିବା ଲୋକର ମନେହେବ ଦୁଇଟିଯାକ ପାତ୍ରରେ ଗୋଟିକରେ ନୋଟ ବିଡ଼ା ଭର୍ତ୍ତି ହୋଇଛି ଓ ଅନ୍ୟଟିରେ ସୁନା ଅଳଙ୍କାର ଭର୍ତ୍ତି ହୋଇଛି ।

ସୋମନାଥ ହିଁ ଯେପରି ବିବାହର ଆୟୋଜନ କର୍ତ୍ତା, ସେହିପରି ଭାବରେ ସେ ଚୌଧୁରୀଙ୍କୁ ପାତ୍ର ଦୁଇଟିର ଢାଙ୍କୁଣି ଖୋଲି ଦେଖାଇ ଦେଲେ । ତା'ପରେ କହିଲେ, "ଆମ ପରମ୍ପରା ହେଲା, ଏସବୁ ସମ୍ପତ୍ତି ଖୋଦ ବରପାତ୍ର ଗଣିବେ ବା ଓଜନ କରି ଦେଖିବେ । ଆଉ କେହି ନୁହେଁ ।"



"ନିଶ୍ଚୟ, ନିଶ୍ଚୟ !" କହି ଚୌଧୁରୀ ପ୍ରବୋଧକୁମାରଙ୍କୁ ପାତ୍ର ଦୁଇଟି ନେଇଯାଇ ସବୁ ଦେଖିବାକୁ କହିଲେ । ପ୍ରବୋଧକୁମାର ଗୋଟିଏ କୋଠରୀ ଭିତରେ ପଶି ତା'ପରେ ବାହାରି ଆସି କହିଲେ କି ସବୁ ଠିକ୍ ଅଛି ।

ବିବାହ ସମ୍ପନ୍ନ ହେଲା । ବର କନ୍ୟା ବିଦା ହେବା ବେଳକୁ ସୋମନାଥ ପାତ୍ର ଦୁଇଟି ଚୌଧୁରୀଙ୍କୁ ସମର୍ପଣ କରି କହିଲେ, "ଆଜିଠୁଁ ଏହା ଆପଣଙ୍କର । କିନ୍ତୁ ଏହାକୁ ହଜମ କରି ପାରିବେ ତ ?"

"ନ ପାରିବି କାହିଁକି ?" ଚୌଧୁରୀ ପଚାରିଲେ ।

"ଆପଣ ଜ୍ଞାନୀ । ଆପଣ ଜାଣନ୍ତି, ଏ ଧନ ଆପଣଙ୍କ ଉପାର୍ଜିତ ନୁହେଁ । ଅନ୍ୟର କଠୋର ଶ୍ରମ ଏହା ପଛରେ ରହିଛି । ଏହା ଅନ୍ୟର ସୁଖଦୁଃଖ, ଆଶା ଭରସାର ଫଳ । ଆପଣ ଏହାକୁ ମାଡ଼ି ବସିବେ ସିନା, କିନ୍ତୁ ଆପଣଙ୍କ କପାଳରେ ଏହା ସୁଖ ଦେବ କି ଦୁଃଖ ଦେବ, କିଏ ଜାଣେ ? ମୋତେ ଜଣେ ତାନ୍ତ୍ରିକ ଗୋଟିଏ ମନ୍ତ୍ର ଶିଖାଇଛନ୍ତି ଯାହା ଫଳରେ ଯେଉଁ ଧନର ପ୍ରକୃତ ରୂପ ଯାହା, ତାହା ପ୍ରକାଶ ପାଇଯିବ । ଆପଣ କହିଲେ, ସେ ମନ୍ତ୍ର ପ୍ରୟୋଗ କରି ଏ ଧନର ରୂପ ଆପଣଙ୍କ ପାଇଁ କ'ଣ ହେବ ତାହା ଦେଖାଇ ଦେଇପାରେ ।" ସୋମନାଥ କହିଲେ ।

"ଆଚ୍ଛା, ଦେଖାଅ ।" ଚୌଧୁରୀ କୌତୂହଳ ପ୍ରକାଶ କଲେ ।

ସୋମନାଥ ମନ୍ତ୍ର ପଢ଼ିବାର ଅଭିନୟ କରି ଢାଙ୍କୁଣି ଦୁଇଟି ଉଠାଇ ନେଲେ । ଏଥର ଢାଙ୍କୁଣି ସହ ଅଗଣ୍ଠିର ପାତ୍ର ଦୁଇଟି ବି ସେ ଉଠାଇ ନେଲେ । ପାତ୍ରର ଗଣ୍ଠିର ଅଂଶରୁ ବାହାରି ଆସିଲେ ଦୁଇଟି ସାପ ।

"ଆରେ ବାପ୍ !" ଚୌଧୁରୀ ଚିତ୍କାର କଲେ ।

କିନ୍ତୁ ଏହା ପରେ ଚୌଧୁରୀଙ୍କ ମନୋଭାବ ବଦଳି ଗଲା । ସେ ତାଙ୍କର ଅନ୍ୟ ପୁଅମାନଙ୍କ ବିବାହ ବେଳକୁ ଯୌତୁକ କଥା ଉଠାଇଲେ ନାହିଁ ।

କହିବା ବାହୁଲ୍ୟ, ସୋମନାଥ ଯେଉଁ ସାପ ସଂଗ୍ରହ କରିଥିଲେ, ସେମାନେ ବିଷଧର ନୁହନ୍ତି !





# ଶାପେ ବର !

ଏକ ଗାଁରେ ଥିଲା ରାମ—ଗରିବ ଚଷାଟିଏ ।

ବହୁ କଷ୍ଟରେ ଚାଷବାସ କରି ନିଜ ପରିବାର ଭରଣପୋଷଣ କରୁଥିଲା । ତା ଜୀବନରେ ଦୁଇଟି ସ୍ୱପ୍ନ ଥିଲା : ଥରେ ସାରା ଦେଶ ଭ୍ରମଣ କରିବ ଓ ବହୁତ ବଢ଼ିଆ ଚିଜମାନ ଖାଇବ । କିନ୍ତୁ ଏ ଦୁଇ କାମନା ଦିନେ ପୂର୍ଣ୍ଣ ହେବ, ସେ ଆଶା ସେ କେବେ କରୁ ନ ଥିଲା ।

ଥରେ ସେ ଭାବିଲା, ଆଉ କିଛି ନ ହେଉ, ଅନ୍ତତଃ ରାଜାଙ୍କ ଉଆସରେ ପ୍ରତିବର୍ଷ ଯେଉଁ ବସନ୍ତ ଉତ୍ସବ ହୁଏ, ଥରେ ଯାଇ ସେତିକି ଦେଖି ଆସିବା ଦରକାର । ଗାଁର ଜଣେ ଯୁବକ କେଶବ ସହିତ ସେ ରାଜଧାନୀକୁ ବାହାରିଲା ।

ସାରାଦିନ ବାଟ ଚାଲିବା ପରେ ଅନ୍ଧାର ହେବା ବେଳକୁ ଦୁହେଁ ଗୋଟିଏ ବଣ ଭିତରେ ପଶିଥାନ୍ତି । ଦୁହେଁ ବହୁତ କ୍ଳାନ୍ତ ହୋଇ ପଡ଼ିଥାନ୍ତି । ବଣ ଭିତରେ ଗୋଟିଏ ପୁରୁଣା ମନ୍ଦିର ସେମାନଙ୍କ ଆଖିରେ ପଡ଼ିଲା । "ଏଇଠାରେ ରାତିକ ବିତାଇବା !" ରାମ ପ୍ରସ୍ତାବ ଦେଲା ।

"ମୁଁ ଏ ମନ୍ଦିର କଥା ଶୁଣିଛି । ଏହା ଚଣ୍ଡମୁଖୀ ନାମକ ଦେବୀଙ୍କର । ତାଙ୍କ ପ୍ରକୃତି ଭୀଷଣ । ସେ ମଣିଷଙ୍କୁ ଭଲ ପାଆନ୍ତି ନାହିଁ । ଦିନ ଯାକ ବଣରେ ବୁଲନ୍ତି ଓ ରାତିରେ ମନ୍ଦିରକୁ ଫେରନ୍ତି । ଫେରି ଆମକୁ ଦେଖିଲେ ଶାପ ଦେବେ ।" କେଶବ କହିଲା ।

"ଶାପ ଦେଲେ ବରଂ ଦେବେ । କିନ୍ତୁ ମୁଁ ଆଉ ଆଗକୁ ଯାଇ ପାରିବି ନାହିଁ ।" ରାମ ଏହା କହି ମନ୍ଦିର ଭିତରକୁ ଉଠିଗଲା । କେଶବ ତାକୁ ଛାଡ଼ି ଆଗେଇ ଗଲା ।

ରାମ ଯାଇ ଶୋଇ ପଡ଼ିଲା । ଅଚିରେ ସେ ଗାଢ଼ ନିଦରେ ଆଚ୍ଛନ୍ନ ହୋଇଗଲା । ମଝି ରାତିକୁ ତା'ର ନିଦ ଭାଙ୍ଗିଗଲା । ମନେ ହେଲା, କିଏ ଯେମିତି ତାକୁ ଚାବୁକରେ ବାଡ଼ଉଛି ।

ସେ ଚମକି ପଡ଼ି ଉଠି ବସି ଦେଖିଲା, ଆଗରେ ଲାଲ ବସ୍ତ୍ର ପରିହିତା ଦେବୀ ଚାବୁକ



ଧରି ଉଭା। ସେ କହିଲେ, "ଆରେ, ତୋର ଏଡ଼େ ସାହସ ଯେ ମୋର ବିନା ଅନୁମତିରେ ମୋ ମନ୍ଦିର ଭିତରେ ଆସି ଶୋଇଛୁ ?"

ରାମ ପ୍ରଣାମ କରି କହିଲା, "ଦେବୀ ! ମୁଁ ଗରିବ ଚଷା। ରାଜଧାନୀକୁ ଯାଉଥିଲି। ଥକିଯାଇ ଏଠି ଶୋଇ ପଡ଼ିଛି। ସକାଳ ହେବା ମାତ୍ରେ ଚାଲିଯିବି। କ୍ଷମା କର !"

"ତୋତେ କ୍ଷମା କରିଛି ବୋଲି ପ୍ରଚାର ହୋଇଗଲେ ଲୋକେ ଏଠାରେ ଆସି ଭିଡ଼ କରିବେ। ତୋତେ ଶାପ ଦେବାକୁହିଁ ପଡ଼ିବ। ତୁ ଚଷା ପରା ? ଆଜିଠାରୁ ବର୍ଷକ ଭିତରେ ଯେଉଁ ଗୁଳ୍ମଲତା ଉପରେ ତୋ ହାତରୁ ପାଣି ପଡ଼ିବ ସେ ଗୁଳ୍ମଲତା ମରିଯିବେ !" ଦେବୀ ଏହା କହି ଅଦୃଶ୍ୟ ହୋଇଗଲେ।

ରାମ ମନ ଦୁଃଖରେ ଯାଇ ରାଜଧାନୀରେ ପହଞ୍ଚିଲା। ବିଚାର କରୁଥାଏ, ଏଭଳି ଅଭିଶାପ ମୁଣ୍ଡରେ ବୋହି ସେ କିପରି କୃଷିକାମ କରି ପାରିବ ?

ବସନ୍ତ ଉତ୍ସବକୁ ଦେଶର ସବୁ ଅଞ୍ଚଳରୁ ବହୁ କୃଷକ ଆସିଥାନ୍ତି। ଉତ୍ସବ ପରେ ସେମାନେ ରାଜାଙ୍କୁ ଭେଟି ସେମାନଙ୍କର ଏକ ସମସ୍ୟା ଜଣାଇଲେ। ତାହା ହେଲା, କ୍ଷେତମାନଙ୍କରେ ଏକ ପ୍ରକାର ସର୍ବନାଶୀ ଗୁଳ୍ମ ବ୍ୟାପୁଛି। ତାକୁ ନିପାତ କରିବା ସହଜ ନୁହେଁ। ପୁଣି ସେ ଗୁଳ୍ମ ପ୍ରାଦୁର୍ଭାବରେ ଫସଲ ମଧ୍ୟ ଉଧାଉ ନାହିଁ।

ସେମାନଙ୍କ ଭିତରେ ରାମ ଥିଲା। ସେ ରାଜାଙ୍କୁ ଅଭିବାଦନ କରି କହିଲା, "ହଜୁର ! ମୋତେ ଅନୁମତି ଓ ସୁବିଧା ଦେଲେ ମୁଁ ବର୍ଷେ ତମାମ ଦେଶଯାକ ବୁଲି ସେ ଗୁଳ୍ମମାନ ନଷ୍ଟ କରି ଦେବି।"

ରାଜା ରାମକୁ ପରୀକ୍ଷା ଦେବାକୁ କହିଲେ। ସେ ବିଷ ଗୁଳ୍ମ ପାଖକୁ ଯାଇ ରାମ ପାଣି ସିଞ୍ଚି ଦେବା ମାତ୍ରେ ଗୁଳ୍ମ ମରିଗଲା। ରାଜା ଆନନ୍ଦିତ ହୋଇ ରାମ ସହିତ ଦଳେ ପରିଚାରକ ଦେଲେ ଓ ରାଜ୍ୟବ୍ୟାପି ବୁଲିବାର ବ୍ୟବସ୍ଥା କରିଦେଲେ। ରାମ ଗ୍ରାମରୁ ଗ୍ରାମ ବୁଲି ପାଣି ସିଞ୍ଚି, ଗୁଳ୍ମମାନ

ନଷ୍ଟ କରିବାକୁ ଲାଗିଲା । ଯୁଆଡ଼େ ଗଲେ ଲୋକେ ତା'ର ଆଦର କଲେ ଓ ନାନାବିଧ ସୁଖାଦ୍ୟ ଖୁଆଇଲେ ।



ବର୍ଷକ ଭିତରେ ରାମର ଉଭୟ ସ୍ୱପ୍ନ ସଫଳ ହେଲା । ସେ ଦେଶ ଭ୍ରମଣ ସମ୍ପୂର୍ଣ୍ଣ କଲା ଓ ପ୍ରଚୁର ସୁଖାଦ୍ୟ ବି ଖାଇଲା । ରାଜା ତାକୁ ଶହେ ଏକର ଜମି ପୁରସ୍କାର ଦେଲେ ।

ପରବର୍ଷ ବସନ୍ତ ଉତ୍ସବ ବେଳକୁ ରାଜଧାନୀ ଅଭିମୁଖେ ଯିବା ବାଟରେ ରାମ ପୁଣି ଚଣ୍ଡମୁଖୀଙ୍କ ମନ୍ଦିରରେ ରାତିଯାପନ କଲା ମଝି ରାତି ବେଳକୁ ଦେବୀ ପ୍ରତ୍ୟକ୍ଷ ହେବାରୁ ସେ ହାତ ଯୋଡ଼ି କହିଲା, "ଦେବୀ ! ଆପଣଙ୍କ ଶାପରୁ ମୋର ମନୋବାଞ୍ଛା ପୂରଣ ହେବା ସଙ୍ଗେ ସଙ୍ଗେ ରାଜ୍ୟର ବି ବହୁତ ଉପକାର ହେଲା ।"

"ଆରେ ମୂଢ଼ ! ପୁଣି ମୋତେ ବିରକ୍ତ କରିବାକୁ ଆସିଛୁ ? ଏ ବର୍ଷ ତୁ ଯେଉଁ ଆଡ଼େ ଯାଉଥିବୁ, ତୋ ପଛେ ପଛେ ମାଟି ଖାଇ ହୋଇ ଯାଇ ଗାଡ଼ ହୋଇଯାଉଥିବ । ଏହା ହେଲେ ତୋତେ କିଏ ଡାକି ଖୁଆଇବ ?" କହି ଦେବୀ ଅଦୃଶ୍ୟ ହୋଇଗଲେ ।

ରାମ ମନ୍ଦିର ବାରନ୍ଦାରେ ଯାଇ ବସି ରହିଲା । ସକାଳେ ଜଣେ ବାଟୋଇ ହାତରେ ରାଜାଙ୍କ ନିକଟକୁ ଖବର ଦେଲା ଗୋଟିଏ ପାଲିଙ୍କି ପଠାଇବା ପାଇଁ । ପାଲିଙ୍କି ଆସିବାରୁ ସେଥିରେ ଯାଇ ରାଜାଙ୍କୁ ଦେଖା କରି ଶାପ ଦ୍ୱାରା ରାଜ୍ୟର କିପରି ଲାଭ ହେବ, ତାର ଏକ ଯୋଜନା ବନାଇଲା ।

ସେ ଯୋଜନା ଅନୁସାରେ ରାଜ୍ୟର ଯେଉଁ ସବୁ ଅଞ୍ଚଳରେ ନାଳ ତିଆରି ହେବା ଦରକାର, ରାମ ସେସବୁ ଅଞ୍ଚଳରେ ପାଦରେ ବୁଲିଲା ଓ ଫଳରେ ପଛେ ପଛେ ନାଳ ତିଆରି ହୋଇଗଲା । ରାଜ୍ୟବ୍ୟାପି ହଜାର ହଜାର ଏକର ଅନାବାଦି ଜମିରେ ଏଣିକି ଫସଲ ଫଳିବାର ପଥ ପ୍ରଶସ୍ତ ହୋଇଗଲା । ଯେଉଁଠି ନାଳ ଦରକାର ନାହିଁ, ସେଠାରେ ରାମ ପାଲିଙ୍କିରେ ବସି ପଥ ଅତିକ୍ରମ କରେ ।

ଏ ବର୍ଷଯାକ ମଧ୍ୟ ସେ ଯୁଆଡ଼େ ଗଲେ ସେଠାକାର ଲୋକେ ନାନା ପ୍ରକାରେ ଅଭ୍ୟର୍ଥନା କରନ୍ତି ଓ ଅତି ଭଲ ଭୋଜନ ଦିଅନ୍ତି ।

ଏଥର ମଧ୍ୟ ରାମନାରାୟଣ ନିଜ ଶାପକୁ ରାଜ୍ୟର ମଙ୍ଗଳରେ ଲଗାଇ ପାରିଲା । ରାଜାଙ୍କ ଠାରୁ ପ୍ରଚୁର ପୁରସ୍କାର ମଧ୍ୟ ପାଇଲା ।

ପରବର୍ଷ ପୁଣି ବସନ୍ତ ଉତ୍ସବ ବେଳକୁ ରାଜଧାନୀ ଅଭିମୁଖେ ଯିବା ବାଟରେ ରାମ ଚଣ୍ଡମୁଖୀଙ୍କ ମନ୍ଦିରରେ ରାତ୍ରିଯାପନ କଲା । ରାତ୍ରି ଅଧରେ ଦେବୀ ପ୍ରକଟ ହେଲେ ।

ରାମ ପ୍ରଣାମ କରି କହିଲା, “ଦେବୀ ! ଆପଣଙ୍କ ଶାପ ଫଳରେ ପୁଣି ବର୍ଷଯାକ ମୋତେ ପର୍ଯ୍ୟଟନ କରିବାର ଓ ସୁଖାଦ୍ୟମାନ ଖାଇବାର ସୁଯୋଗ ମିଳିଲା । ଜନତାର ବି ବହୁ କଲ୍ୟାଣ କରି ପାରିଲି ଓ ପୁଣ୍ୟ ଲାଭ କଲି । ଆପଣ ଶା ଦେବା ବନ୍ଦ କଲେ ଆପଣଙ୍କ ପୂଜା ଅର୍ଚ୍ଚନାର ବନ୍ଦୋବସ୍ତ କରିବି । ଫଳରେ ଲୋକେ ଆସି ଆପଣଙ୍କୁ ବିରକ୍ତ କରିବେ ।”

“ମୂଢ଼ ! ତୋର ଏତେ ଦର୍ପ ? ଏଣିକି ଯେଉଁ ଶାପ ଦେବି, ତାହା ଆଉ ବର୍ଷକ ପାଇଁ ନୁହେଁ । ଯେ ଯାଏ ମୁଁ ଏଠାରେ ରହିଥିବି, ସେ ଯାଏ ଏ ଶାପ ବି ବଳବତ୍ତର ରହିବ । ତୁ ଯାହା ଆଡ଼କୁ ଅନାଇବୁ, ସେ ତତ୍‌କ୍ଷଣାତ୍ ଭସ୍ମୀଭୂତ ହୋଇଯିବ । ଯା, ଏଥର ତୋତେ କିଏ ଆଦର କରିବ ଦେଖିବା !” ଚଣ୍ଡମୁଖୀ କ୍ରୁଦ୍ଧା ହୋଇ କହିଲେ ।

ରାମ ନିଜ ପଗଡ଼ି ଖୋଲି ଚଟାପଟ ଆଖିରେ ପଟି ବାନ୍ଧି ଦେଇ ମନ୍ଦିର ବାହାରକୁ ଆସି ଅପେକ୍ଷା କଲା । ଯେମିତି ଭୋର ହୋଇଛି ବୋଲି ସେ ବୁଝିଲା, ପଟି ଖୋଲି ସେ ପ୍ରଥମେ ମନ୍ଦିର ଆଡ଼କୁ ଦୃଷ୍ଟି ନିକ୍ଷେପ କଲା । ମନ୍ଦିର ଓ ଦେବୀ ତତ୍‌କ୍ଷଣାତ୍ ଉଭେଇଗଲେ । ଦେବୀ ଚାଲିଯିବାରୁ ଶାପର ପ୍ରଭାବ ବି ଆଉ ବଳବତ୍ତର ରହିଲା ନାହିଁ ।

ରାମ ସେଠାରେ ଗୋଟିଏ ପାନ୍ଥଶାଳା ନିର୍ମାଣ କଲା ଏବଂ ଦେବୀଙ୍କର “ଶାପେ ବର” ମହିମାରୁ ରାଜାଙ୍କଠୁଁ ପାଇଥିବା ସମ୍ପଦ ବଳରେ ସୁଖରେ ଦିନ କଟାଇଲା ।





# ବୀର ହନୁମାନ

ପୂର୍ବ-ନିର୍ଦ୍ଦିଷ୍ଟ ଯୋଜନା ଅନୁସାରେ ବାନର ସେନା ଲଙ୍କା ବେଷ୍ଟନ କରିଗଲେ । ଉତ୍ତର ଓ ପଶ୍ଚିମ ଦ୍ୱାର ମଧ୍ୟବର୍ତ୍ତୀ ଅଞ୍ଚଳରେ ସୁଗ୍ରୀବ ତାଙ୍କ ବାହିନୀ ସହ ଜରୁରୀ ଦରକାର କରିବା ବେଳେ ସହାୟତା ପାଇଁ ପ୍ରସ୍ତୁତ ହୋଇ ରହିଲେ । ବିରାଟ ଶିଳାଖଣ୍ଡ ଓ ବୃକ୍ଷମାନ ଧରି ବାନରମାନେ ତ୍ରିକୂଟ ପର୍ବତ ଉପରେ ଠିଆ ହୋଇ ଯାଇଥାନ୍ତି । ସେମାନଙ୍କ କୋଳାହଳର ବର୍ଣ୍ଣନା ଦେବା ଅସମ୍ଭବ ।

ବିଭୀଷଣଙ୍କ ସହ ପରାମର୍ଶ କରି ରାମ ଅଙ୍ଗଦଙ୍କୁ ଦୂତ ରୂପେ ରାବଣର ଦରବାରକୁ ପେଶିବା ନିମନ୍ତେ ସିଦ୍ଧାନ୍ତ ନେଲେ । ଅଙ୍ଗଦଙ୍କୁ ଡକାଇ ସେ ରାବଣଙ୍କୁ ଯାଇ ଏହିପରି କୁହନ୍ତୁ ବୋଲି ନିର୍ଦ୍ଦେଶ ଦେଇ ରାମ କହିଲେ : "ହେ ରାବଣ ! ବ୍ରହ୍ମାଙ୍କର ବର ବଳରେ ତମର ଯେଉଁ ଦମ୍ଭ ଥିଲା, ତାହା ବର୍ତ୍ତମାନ ଚୂର୍ଣ୍ଣୀଭୂତ ହେବ । ତୁମେ ସୀତାଙ୍କୁ ଅପହରଣ କରି ନେଇ ଯାଇଛ । ସେ ପାପ ହେତୁ ତୁମର ମୃତ୍ୟୁ ଅନିବାର୍ଯ୍ୟ । ଯେଉଁ ବଳ ଉପରେ ଭରସା କରି ତୁମେ ସୀତାଙ୍କୁ ନେଇ ଆସି ପାରିଲ, ଏଥର ମୋ ସମ୍ମୁଖରେ ଆସି ସେ ବଳରେ ପରୀକ୍ଷା ଦିଅ । ବର୍ତ୍ତମାନ ମଧ୍ୟ ସମୟ ଅଛି । ତମେ ସୀତାଙ୍କୁ ମୋ ପାଖରେ ସମର୍ପଣ କରି ମୋର ଶରଣ ନିଅ । ନହେଲେ ଅଚିରେ ତୁମର ସର୍ବନାଶ ହେବ । ଧର୍ମାତ୍ମା ବିଭୀଷଣଙ୍କୁ ଲଙ୍କାର ରାଜଗାଦି ଦେଇ ମୁଁ ବାହୁଡ଼ି ଯିବି । ତମେ ଯଦି ପକ୍ଷୀରୂପ ଧରି



ପଳାଇବାକୁ ବସିବ, ତଥାପି ନିସ୍ତାର ନାହିଁ । ତମେ ଶେଷ ଥର ପାଇଁ ନିଜ ପ୍ରିୟ ନଗରୀକୁ ଥରେ ହୃଦୟ ପୂରାଇ ଦେଖିନିଅ । ପ୍ରାଣ ଥାଉଁ ଥାଉଁ ନିଜର ଅନ୍ତ୍ୟେଷ୍ଟି କ୍ରିୟା ବି କରି ନେଇପାର ! ତମ ପ୍ରାଣ ବର୍ତ୍ତମାନ ମୋ ହାତରେ ।"

ଅଙ୍ଗଦ କାଳ ବିଳମ୍ବ ନ କରି ରାବଣର ଦରବାର ଭିତରକୁ ଉଡ଼ିଯାଇ ପହଞ୍ଚିଲେ । ରାବଣ ସେତେବେଳେ ତା' ମନ୍ତ୍ରୀଙ୍କ ଗହଣରେ ବସିଥିଲା । ଅଙ୍ଗଦ ନିଜର ପରିଚୟ ଦେଇ ରାମ ପଠାଇଥିବା ବାର୍ତ୍ତା ରାବଣକୁ ଶୁଣାଇ ଦେଲେ ।

ସେ କଠୋର ବାର୍ତ୍ତା ଶୁଣି ରାବଣ କ୍ରୋଧରେ ଥରିବାକୁ ଲାଗିଲା । ସେ ଚିତ୍କାର କରି ଅଙ୍ଗଦକୁ ବନ୍ଦୀ କରିବା ନିମନ୍ତେ ରାକ୍ଷସମାନଙ୍କୁ ଆଦେଶ ଦେଲା । ଚାରି ଜଣ ରାକ୍ଷସ ତତ୍‌କ୍ଷଣାତ୍ ଆଗକୁ ଡେଇଁ ପଡ଼ି ଅଙ୍ଗଦଙ୍କୁ ବନ୍ଦୀ କରିବା ପାଇଁ ଚେଷ୍ଟା କଲେ । କିନ୍ତୁ ଅଙ୍ଗଦ ସେମାନଙ୍କ ଆଡ଼କୁ ଥରେ ତାଚ୍ଛଲ୍ୟପୂର୍ଣ୍ଣ ଦୃଷ୍ଟିରେ ଅନାଇ ଶୂନ୍ୟକୁ ଲମ୍ଫ ପ୍ରଦାନ କରନ୍ତେ ସେମାନେ ଅଧାରୁ ଖସି ପଡ଼ି ତଳେ କଚଡ଼ା ଖାଇଲେ । ଅଙ୍ଗଦ ଦରବାରର ଶିଖର ଉପରେ ପଦାଘାତ କରନ୍ତେ ତାହାର ଏକ ଅଂଶ ଭାଙ୍ଗି ଗଲା । ଅଙ୍ଗଦ ତତ୍ପରେ ଅଟ୍ଟହାସ୍ୟ କରି ରାମଙ୍କ ନିକଟକୁ ଫେରିଗଲେ ।

ଅଙ୍ଗଦଙ୍କର ଏ ତେଜ ଦେଖି ରାବଣ ଘୋର ଅପମାନ ଓ ଭୟ ଅନୁଭବ କଲା । ସେ ସିଂହାସନ ଛାଡ଼ି ଉଠି ଠିଆ ହୋଇ ଦୀର୍ଘ ନିଃଶ୍ୱାସ ଛାଡ଼ୁଥାଏ । ତା'ର ବାକ୍‌ସ୍ଫୁର୍ତ୍ତି ହେଉ ନ ଥାଏ ।

ବାନର ବୀରମାନେ ଯୁଦ୍ଧ ପାଇଁ ପ୍ରବଳ ଉତ୍କଣ୍ଠିତ ହୋଇ ପଡ଼ିଥାନ୍ତି । ପର୍ବତ ପ୍ରମାଣ କଳେବରର ଅଧିକାରୀ ସୁଷେଣ ସୁଗ୍ରୀବଙ୍କ ଆଦେଶରେ ତାଙ୍କର ଦଳେ ଅନୁଚରଙ୍କୁ ଧରି ନଗରୀ ଚାରିପଟେ ବୁଲି ବୁଲି ଦ୍ୱାରମାନଙ୍କୁ ଉପରେ ଦୃଷ୍ଟି ରଖିଥାନ୍ତି । ନଗରୀ ଭିତରେ ରାକ୍ଷସ ସୈନ୍ୟମାନଙ୍କର ଉତ୍ତେଜିତ କୋଳାହଳ ଶୁଭୁଥାଏ ।

କେତେଜଣ ରାକ୍ଷସ ଦୌଡ଼ି ଆସି ରାବଣକୁ କହିଲେ ଯେ ସାରା ନଗରୀକୁ ବାନରମାନେ ଘେରି ଯାଇଛନ୍ତି । ରାବଣ ତା' ନଅର ଶୀର୍ଷକୁ



ଯାଇ ଚତୁର୍ଦ୍ଦିଗକୁ ଅନାଇଲା । ଯାହା ଦେଖିଲା, ସେଥିରେ ତା'ର ଆତଙ୍କ ଗାଢ଼ ହେଲା । ଅସଂଖ୍ୟ ବାନର ତ୍ରିକୂଟ ପର୍ବତ ଉପରେ ଝଟେଇ ରହି-ଛନ୍ତି । ଏତେ ବାନରଙ୍କୁ ବଧ କରିବା କ'ଣ ସମ୍ଭବ ? ସେ ଏହି ଚିନ୍ତାରେ ଘାରି ହେଲା ।

ରାମ ସମ୍ମୁଖକୁ ଆସି ନଗରୀର ପ୍ରଧାନ ଦ୍ୱାର ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ । ଯେତେବେଳେ ତାଙ୍କ ମନକୁ ଏହି ବିଚାର ଆସିଲା ଯେ ଏହି ନଗରୀ ଭିତରେ ସୀତା ବନ୍ଦିନୀ ହୋଇ ରହିଛନ୍ତି, ସେତେବେଳେ ଯୁଗପତ୍ ଦୁଃଖ ଓ କ୍ରୋଧରେ ଅଧୀର ହୋଇ ସେ ସୈନ୍ୟମାନଙ୍କୁ କହିଲେ, "ଏଥର ଶତ୍ରୁ ସଂହାର ଆରମ୍ଭ କର !"

ବାନରମାନେ ତ ପ୍ରସ୍ତୁତ ହୋଇ ରହିଥିଲେ । ବିଭୀଷଣ ନିଜର ରକ୍ଷା କବଚ ଧାରଣ କରି ନିଜ ମନ୍ତ୍ରୀମାନଙ୍କ ସହ ରାମଙ୍କ ଆଗରେ ହିଁ ଠିଆ ହୋଇଥିଲେ । ଗଜ, ଗବାକ୍ଷ, ଗବୟ, ଶରଭ ଓ ଗନ୍ଧମାଦନ ଚାରିଆଡ଼େ ବୁଲି ବୁଲି ସୈନ୍ୟ ସଜ୍ଜା ଲକ୍ଷ୍ୟ କରୁଥିଲେ । ରାମଙ୍କ ଆଦେଶ ପାଇବା ମାତ୍ରେ ହର୍ଷ ଧ୍ୱନି କରି ବାନରମାନେ ଆଗକୁ ମାଡ଼ିଗଲେ ।

ରାବଣ ତାହା ଦେଖି ପାରି ବାନରମାନଙ୍କୁ ସାମନା କରିବାକୁ ରାକ୍ଷସମାନଙ୍କୁ ଆଦେଶ ଦେଲା । ଉଭୟ ପକ୍ଷରୁ ଭୀଷଣ କୋଳାହଳ ଶୁଭିଲା । ଶଙ୍ଖଧ୍ୱନି ଓ ଭେରୀନାଦରେ ଚତୁର୍ଦ୍ଦିଗ କମ୍ପି ଉଠିଲା ।

ଦୁଇ ପକ୍ଷ ମଧ୍ୟରେ ସମର ଆରମ୍ଭ ହୋଇ-ଗଲା । ରାକ୍ଷସମାନେ ଶୂଳ, ଗଦା, ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଯୋଗେ ଲଢ଼େଇ କରୁଥାନ୍ତି । ବଡ଼ ବଡ଼ ବୃକ୍ଷ ଓ ଶିଳାଖଣ୍ଡମାନ ବାନରମାନଙ୍କର ମୁଖ୍ୟ ଅସ୍ତ୍ର ହୋଇଥାଏ । ସଙ୍ଗେ ସଙ୍ଗେ ବାନର-ମାନେ ରାକ୍ଷସମାନଙ୍କୁ ଆମ୍ପୁଡ଼ି ପକାଇବାକୁ ଛାଡ଼ୁ ନ ଥାନ୍ତି । ସେ ଆମ୍ପୁଡ଼ା ଓ ବିଧାମାଡ଼ରେ ବହୁ ରାକ୍ଷସ ଛତ୍ରଭଙ୍ଗ ଦେଉଥାନ୍ତି ।

ଦଳ ଦଳ ରାକ୍ଷସ ପ୍ରାଚୀର ଆରୋହଣ କରି ବାନରମାନଙ୍କ ଆଡ଼କୁ ଅସ୍ତ୍ର ନିକ୍ଷେପ କରୁଥାନ୍ତି । ବାନରମାନେ ସ୍ଥାନ ବିଶେଷରେ ସେ ପ୍ରାଚୀର-



ମାନ ଉପସ୍ଥିତ କରିବା ଫଳରେ ରାକ୍ଷସମାନେ ଆସି ତଳେ ପଡ଼ି କଲବଲ ହେଉଥାନ୍ତି । ଯୁଦ୍ଧ କ୍ରମେ ଭୀଷଣ ଆକାର ଧାରଣ କରୁଥାଏ ।

ଅସ୍ତ୍ର-ଯୁଦ୍ଧ କ୍ଷେତ୍ର ବିଶେଷରେ ଦ୍ୱନ୍ଦ୍ୱ ଯୁଦ୍ଧରେ ପରିଣତ ହୋଇଥାଏ । ମେଘନାଦ ସହ ଅଙ୍ଗଦ, ପ୍ରଜଙ୍ଘ ସହ ବିଭୀଷଣଙ୍କ ମନ୍ତ୍ରୀ ସମ୍ପାତି ଓ ଜମ୍ବୁମାଳୀ ସହ ହନୁମାନ ଲଢ଼ୁଥାନ୍ତି । ଅନ୍ୟ ସ୍ଥାନମାନଙ୍କରେ ତପନ ନାମକ ରାକ୍ଷସ ସହ ଗଜ, ଏବଂ ନିକୁମ୍ଭ ସହ ଯୁଦ୍ଧ କରୁଥାନ୍ତି ନୀଳ । ପ୍ରଘସ ସହ ସୁଗ୍ରୀବଙ୍କର ଘମାଘୋଟ ଲଢ଼େଇ ଚାଲିଥାଏ । ବିରୂପାକ୍ଷ ପଡ଼ିଥାଏ ଲକ୍ଷ୍ମଣଙ୍କ ହାତରେ । ଯୁଦ୍ଧର ସେ ଉତ୍ତେଜନାମୂଳକ ଦୃଶ୍ୟମାନଙ୍କର ବର୍ଣ୍ଣନା ଦେବା ସହଜ ନୁହେଁ ।

ଅଙ୍ଗଦଙ୍କ ଆକ୍ରମଣରେ ମେଘନାଦ ତାଙ୍କ ରଥ, ସାରଥୀ ଓ ଘୋଡ଼ାମାନ ହରାଇଲେ ।

ସମ୍ପାତି ହାତରେ ପ୍ରଜଙ୍ଘ ପ୍ରାଣ ହରାଇଲେ । ହନୁମାନଙ୍କ ମାଡ଼ରେ ଜମ୍ବୁମାଳୀ ପୃଷ୍ଠଭଙ୍ଗ ଦେଲେ । ନଳଙ୍କ ଆକ୍ରମଣରେ ପ୍ରତାପନ ନାମକ ରାକ୍ଷସ ଅନ୍ଧ ହୋଇଗଲା । ସୁଗ୍ରୀବଙ୍କ ହାତରେ ପ୍ରଘସ ମଲା ।

ଚାରି ଜଣ ରାକ୍ଷସ ସର୍ଦ୍ଦାର ହଠାତ୍ ରାମଙ୍କ ଆଡ଼କୁ ଏକାଧ ଶର ପ୍ରୟୋଗ କଲେ । କିନ୍ତୁ ରାମଙ୍କ ଶର ସେ ଚାରି ଶରକୁ ଛେଦ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକର ଚାରି ପ୍ରେରକଙ୍କର ଶିରଚ୍ଛେଦ କଲା । ବଜ୍ରମୁଷ୍ଟି ନାମକ ରାକ୍ଷସ ମୈନ୍ଦଙ୍କ ବିଧାମାଡ଼ ଖାଇ ଖାଇ ଅଚେତ ହୋଇଗଲା । ବାନର ବୀର ସୁଷେଣ ରାକ୍ଷସ ବିଦ୍ୟୁନ୍ମାଳୀକୁ ନିହତ କଲେ । ଦ୍ୱନ୍ଦ୍ୱ ଯୁଦ୍ଧରେ ବହୁ ରାକ୍ଷସ ବାନରମାନଙ୍କ ହାତରେ ପ୍ରାଣ ଦେଲେ ।

ସୂର୍ଯ୍ୟାସ୍ତ ହେଲା । କ୍ରମେ ଚତୁର୍ଦ୍ଦିଗ ଅନ୍ଧକାର ହୋଇ ଆସିଲା । ତଥାପି ଯୁଦ୍ଧଭୂମିରୁ କେହି ସହଜରେ ବାହୁଡ଼ିଲେ ନାହିଁ । ରାକ୍ଷସମାନେ କେହି କେହି ବାନରମାନଙ୍କୁ ଧରି ଖାଇଗଲେ । ସୁନାର ଭୂଷଣ ଓ ଚକ୍‌ମକ୍ ଦାନ୍ତରୁ ରାକ୍ଷସମାନଙ୍କୁ ଅନ୍ଧକାର ଭିତରେ ଚିହ୍ନିପାରି

ବାନରମାନେ ଆକ୍ରମଣ କରିବାକୁ ଲାଗିଲେ । ଅନ୍ଧକାର ଆହୁରି ଗହନ ହେବା ସତ୍ତ୍ୱେ ରାମ ଲକ୍ଷ୍ମଣଙ୍କ ଶରରେ ରାକ୍ଷସମାନଙ୍କ ନିଧନ ଚାଲିଥାଏ ।



ଅଙ୍ଗଦଙ୍କ ହାତରେ ନିଜ ରଥ, ସାରଥୀ ଓ ଘୋଡ଼ା ହରାଇ ମେଘନାଦ ମାୟା ବଳରେ ଅଦୃଶ୍ୟ ହୋଇଗଲା । ସେହି ଅଦୃଶ୍ୟ ଅବସ୍ଥାରେ ଥାଇ ସେ ନାଗାସ୍ତ୍ର ପ୍ରୟୋଗ କରି ରାମ ଓ ଲକ୍ଷ୍ମଣଙ୍କୁ ବନ୍ଦୀ କଲା ଓ ଶୂନ୍ୟରୁ କହିଲା, "ମୁଁ ଅଦୃଶ୍ୟ ହୋଇ ଯୁଦ୍ଧ କଲେ ଇନ୍ଦ୍ର ବି ମୋ ଆଗରେ ତିଷ୍ଠିବେ ନାହିଁ । ତମେମାନେ ତ ସାମାନ୍ୟ ମଣିଷ ! ଏଥର ମୃତ୍ୟୁ ପାଇଁ ପ୍ରସ୍ତୁତ ହୋଇଯାଅ ।"

ଦେଖୁଁ ଦେଖୁଁ ରାମ ଲକ୍ଷ୍ମଣଙ୍କ ଦେହ ଶର ଦ୍ୱାରା ଆବୃତ ହୋଇଗଲା । ସେମାନେ କିଛି ଦେଖି ପାରିଲେ ନାହିଁ । ତଥାପି ମେଘନାଦ ବାଣବୃଷ୍ଟିରୁ ବିରତ ହେଉ ନ ଥାଏ । ଦୁଇ ଭାଇ ତଳେ ପଡ଼ିଗଲେ । ସେମାନଙ୍କ ଦେହରୁ ରକ୍ତ ସ୍ରୋତ ବହି ଯାଉଥାଏ । ରାମଙ୍କୁ ସେ ଅବସ୍ଥାରେ ଦେଖି ଲକ୍ଷ୍ମଣ ହତାଶ ହୋଇ ପଡ଼ିଲେ । ହନୁମାନ ପ୍ରମୁଖ ବୀରମାନେ ରାମ ଲକ୍ଷ୍ମଣଙ୍କୁ ଘେରି ଘୋର ଦୁଃଖରେ କାନ୍ଦିବାକୁ ଲାଗିଲେ । ବାନରମାନେ ମେଘନାଦକୁ ଯେତେ ଖୋଜିଲେ ବି ଦେଖି ପାରୁ ନ ଥାନ୍ତି ।

କିନ୍ତୁ ମାୟା ଦୃଷ୍ଟିରେ ବିଭୀଷଣ ମେଘନାଦକୁ ଦେଖି ଦେଲେ । ସେତେବେଳେ ମେଘନାଦ ତା'ର ରାକ୍ଷସ ଅନୁଚରମାନଙ୍କୁ କହୁଥାଏ, "ଦେଖିଲ ମୋର କରାମତି ? ମୋ ଆଗରେ ପୁଣି ରାମ ଲକ୍ଷ୍ମଣ ଛିଡ଼ା ହେବେ ! ମୁଁ ଏମାନଙ୍କୁ ଯେଉଁ ଶର ଗୁଚ୍ଛରେ ବନ୍ଦୀ କରିଛି, ସେଥିରୁ କେହି ଏମାନଙ୍କୁ ମୁକ୍ତ କରି ପାରିବେ ନାହିଁ । ମୋ ହାତରେ ଦୁହେଁ ମଲେ ।"

ଏହା ପରେ ମେଘନାଦ ଶରବୃଷ୍ଟି କରି ବାନରମାନଙ୍କୁ ହରକତ କରିବାକୁ ଲାଗିଲା । ରାକ୍ଷସମାନେ ମେଘନାଦର ପ୍ରଶଂସାରେ ଶତମୁଖ ହୋଇ ଉଠିଲେ । ରାମ ଲକ୍ଷ୍ମଣ ମୃତ ବୋଲି ଭାବି ଅତି ଖୁସିରେ ମେଘନାଦ ନଗରୀ ଭିତରକୁ



ଚାଲିଗଲା ।

ରାମ ଲକ୍ଷ୍ମଣଙ୍କ ଦେହରେ ଶରର ବାହୁଲ୍ୟ ଦେଖି ସୁଗ୍ରୀବ ମଧ୍ୟ ଭୟଭୀତ ହେଲେ । ସେ ଅଶ୍ରୁପାତ କରିବାକୁ ଲାଗିଲେ । ବିଭୀଷଣ ତାଙ୍କୁ ବୁଝାଇଲେ, "ସୁଗ୍ରୀବ ! ଭୟ ନାହିଁ । ରାମ ଲକ୍ଷ୍ମଣ କେବଳ ଅଚେତ ହୋଇ ଯାଇଛନ୍ତି ମାତ୍ର । ଯୁଦ୍ଧରେ ଏପରି ଦୁର୍ଘଟଣା ହୁଏ । ଶୀଘ୍ର ଚେତା ଫେରି ଆସିବ ।" ଏହା କହି ବିଭୀଷଣ ସୁଗ୍ରୀବଙ୍କ ଅଶ୍ରୁ ପୋଛି ଦେଲେ । ସୁଗ୍ରୀବଙ୍କ ମନରେ ପୁଣି ଆଶା ଓ ସାହସର ସଞ୍ଚାର ହେଲା ।

ନଗରୀ ଭିତରେ ମେଘନାଦ ଯାଇ ତା' ପିତା ରାବଣକୁ କହିଲା, "ମୁଁ ରାମ ଲକ୍ଷ୍ମଣଙ୍କୁ ବଧ କରି ଆସିଲି !"

ରାବଣର ଆନନ୍ଦ କହିଲେ ନ ସରେ । ସେ ଆସି ମେଘନାଦକୁ ଆଲିଙ୍ଗନ କଲା ଓ ତା'ର ସାଫଲ୍ୟ ସମ୍ପର୍କରେ ସବିସ୍ତାରେ ଶୁଣିଲା ।

ମେଘନାଦକୁ ବିଦାୟ ଦେଇ ରାବଣ ସୀତାଙ୍କ ପାଖରେ ପ୍ରହରୀ ଦେଉଥିବା ରାକ୍ଷସୀମାନଙ୍କୁ ଡକାଇ ପଠାଇଲା । ତ୍ରିଜଟା ଇତ୍ୟାଦି ଆସି ପହଞ୍ଚିବାରୁ ସେ କହିଲା, "ତମେମାନେ ଯାଇ ସୀତାଙ୍କୁ ଜଣାଇ ଦିଅ ଯେ ମେଘନାଦ ହାତରେ ରାମ ଲକ୍ଷ୍ମଣ ମରି ଯାଇଲେଣି । ପୁଷ୍ପକ ବିମାନରେ ତାଙ୍କୁ ନେଇଯାଇ ରାମ ଲକ୍ଷ୍ମଣଙ୍କ ମୃତ ଦେହ ଦେଖାଇ ଦିଅ । ଏଥର ସୀତା ରାମ ଲକ୍ଷ୍ମଣଙ୍କ ଆଶା ଛାଡ଼ି ଦେଇ ମୋର ଅନୁଗାମିନୀ ହୁଅନ୍ତୁ । ମୋ ସହ ବିବାହ ପାଇଁ ପ୍ରସ୍ତୁତ ହୁଅନ୍ତୁ । ମୁଁ ତାଙ୍କୁ ପଟ୍ଟମହିଷୀ ବନାଇବି ।"

ରାକ୍ଷସୀମାନେ ଅଶୋକ ବନ ଭିତରକୁ ପୁଷ୍ପକ ବିମାନ ନେଇଗଲେ । ସୀତାଙ୍କୁ ସେଥିରେ ବସାଇ ତ୍ରିଜଟା ଇତ୍ୟାଦି ରାମ ଲକ୍ଷ୍ମଣଙ୍କ ମୃତ ଦେହ ଦେଖାଇବା ପାଇଁ ଯୁଦ୍ଧ କ୍ଷେତ୍ରକୁ ନେଇଗଲେ ।

ଲଙ୍କା ଉପରେ ବିଜୟ ବାନା ଉଡ଼ାଇବାର ନିର୍ଦ୍ଦେଶ ଦେଲା ରାବଣ । ନଗର ଅଲଙ୍କୃତ କରିବାର ହୁକୁମ ବି ପ୍ରଚାର ହୋଇଗଲା । ମେଘନାଦ ରାମ ଲକ୍ଷ୍ମଣଙ୍କୁ ବଧ କରିଥିବାର ବାର୍ତ୍ତା ପ୍ରଚାର

କରି ଦିଆଗଲା । ଉତ୍ସବର ପ୍ରସ୍ତୁତି ଲାଗିଲା ।

ରାକ୍ଷସମାନେ ହର୍ଷଧ୍ୱନି କରି ଲଙ୍କାପୁରୀର ପଥପ୍ରାନ୍ତରେ ନାଚକୁଦ କରିବାକୁ ଲାଗିଲେ । କେହି କେହି ଅସ୍ତ୍ର ଫୋପାଡ଼ି ଦେଇ ବାଦ୍ୟଯନ୍ତ୍ର-ମାନ ଧରି ବସିଗଲେ । କେହି କେହି ବାନର-ମାନଙ୍କ ପ୍ରତି ଦୂରରୁ ବିଦ୍ରୂପ କରୁଥାନ୍ତି ।

ସୀତା ଦେଖିଲେ ରାକ୍ଷସମାନେ ପ୍ରବଳ ଉତ୍ସାହ-ଭରେ ବୁଲୁଛନ୍ତି । ବାନରମାନେ ବିମର୍ଷ ଦିଶୁ-ଛନ୍ତି । ଶରଦ୍ୱାରା ଆବୃତ ରାମ ଲକ୍ଷ୍ମଣଙ୍କୁ ବି ସେ ଦେଖିଲେ ଓ ଦୁଃଖରେ ଅସ୍ଥିର ହୋଇ ଉଠିଲେ । ତାଙ୍କର ମନେ ପଡ଼ିଲା, ଜ୍ୟୋତିଷମାନେ କହି-ଥିଲେ ସେ ଦିନେ ବିରାଟ ରାଜ୍ୟର ରାଣୀ ହେବେ । ସୁପୁତ୍ରଙ୍କର ଜନନୀ ହେବେ । ସେସବୁ କ'ଣ ମିଥ୍ୟା ? ସେ କିଛି ବୁଝିପାରିଲେ ନାହିଁ ।

ସୀତାଙ୍କୁ ସାନ୍ତ୍ୱନା ଦେଇ ତ୍ରିଜଟା କହିଲେ, "ଭଉଣୀ ! ଧୈର୍ଯ୍ୟ ଧର । ରାମ ଲକ୍ଷ୍ମଣ ଅଚେତ ହୋଇଛନ୍ତି । ଆଉ କିଛି ନୁହେଁ ।" ଏହାପରେ ରାକ୍ଷସୀମାନେ ପୁଷ୍ପକ ବିମାନ ବୁଲାଇ ଅଶୋକ-ବନକୁ ଫେରି ଆସିଲେ ।

କିଛି ସମୟ ଉତ୍ତାରୁ ରାମଙ୍କ ଚେତା ଫେରି ଆସିଲା । କିନ୍ତୁ ସେ ଶର ପାଶରେ ବନ୍ଦୀ ରହିଥାନ୍ତି । ମୃତବତ୍ ଲକ୍ଷ୍ମଣଙ୍କୁ ଦେଖି ସେ ଶୋକାର୍ତ୍ତ ହେଲେ । ସେ କହିଲେ, "ଲକ୍ଷ୍ମଣ ମରି ଗଲେ ମୋର ବଞ୍ଚି ରହିବା ଅସମ୍ଭବ । ବିଭୀଷଣଙ୍କୁ ଲଙ୍କାର ରାଜା ବନାଇବାର ପ୍ରତିଶ୍ରୁତି ମୁଁ ହୁଏତ ରକ୍ଷା କରିପାରିବି ନାହିଁ । ତେଣୁ ସୁଗ୍ରୀବ ନିଜ ବାନର ସେନା ସହ କିଷ୍କିନ୍ଧ୍ୟା ଫେରି ଯିବା ଯୁକ୍ତିଯୁକ୍ତ ହେବ ।"

ରାମଙ୍କ ଏ କଥା ଶୁଣି ସମସ୍ତ ବାନର ଦୁଃଖରେ ବୁଡ଼ି ଗଲେ ।

ରାମଙ୍କ ଶିବିରରେ ଦୀର୍ଘ ସମୟ ଧରି ବିଷାଦ ଓ ନୀରବତା ବିରାଜମାନ କଲା । ବାନରବୀର-ମାନେ ପରସ୍ପରଠାରୁ ନିଜ ନିଜ ଅଶ୍ରୁ ଗୋପନ କରୁଥାନ୍ତି ।





# ଅମର ବାଣୀ

ଜୀର୍ଣମନ୍ନମ୍ ପ୍ରଶଂସନ୍ତି
ଭାର୍ଯ୍ୟାମ୍ ଚ ଗତଯୌବନାମ୍
ଶୂରମ୍ ବିଜିତ ସଂଗ୍ରାମମ୍
ଗତ ପାରମ୍ ତପସ୍ୱୀନମ୍ ॥ ୧ ॥

[ଜୀର୍ଣ୍ଣ ହୋଇ ସାରିବା ପରେ ଭୋଜନର, ଯୌବନ ଢଳିଯିବା ପରେ ସ୍ତ୍ରୀର, ଯୁଦ୍ଧରେ ବିଜୟୀ ହେବା ପରେ ଯାଇ ବୀରର ଓ ସିଦ୍ଧି ଲାଭ କରିବା ପରେ ଯାଇ ତପସ୍ୱୀର ପ୍ରଶଂସା କରାଯାଏ ।]

କାକଃ କୃଷ୍ଣଃ ପିକଃ କୃଷ୍ଣଃ
କୋ ଭେଦଃ ପିକ କାକୟୋଃ ?
ବସନ୍ତ କାଲେ ସଂପ୍ରାପ୍ତେ,
କାକଃ କାକଃ ପିକଃ ପିକଃ ॥ ୨ ॥

[କାଉ ଯେମିତି କଳା, କୋଇଲି ବି ସେମିତି କଳା । ଦୁହିଁଙ୍କ ଭିତରେ ପାର୍ଥକ୍ୟ କ'ଣ ? ବସନ୍ତ କାଳ ସମାଗତ ହେଲେ ଯାଇ କାଉ ଯେ କାଉ ଓ କୋଇଲି ହେଲା କୋଇଲି, ସେକଥା ଜଣାପଡ଼ିଯାଏ ।]

ପୃଥ୍ୱିବ୍ୟାମ୍ ତ୍ରୀଣି ରତ୍ନାନି
ଜଲମନ୍ନମ୍ ସୁଭାଷିତମ୍;
ମୂଢୈଃ ପାଷାଣ ଖଣ୍ଡେଷୁ
ରତ୍ନ ସଂଜ୍ଞା ବିଧୀୟତେ ॥ ୩ ॥

ପୃଥିବୀରେ ଜଳ, ଅନ୍ନ ଓ ମଧୁର କଥା, ଏ ତିନି ହେଲେ ପ୍ରକୃତ ରତ୍ନ । ଅଥଚ ମୂଢ଼ ଲୋକେ ପଥର ଖଣ୍ଡକୁ ରତ୍ନ ବୋଲି ଗ୍ରହଣ କରିଥାନ୍ତି ।]

Photo by K. S. Vijayaker



ଚିତ୍ର
ପରିଚୟ

ବାଘ ମୋ ନିକଟରେ ବିରାଡ଼ି ଭଳି

ପୁରସ୍କାରପ୍ରାପ୍ତ
କମଳ ଦାସ

Jahnamamu, October 1976 Photo by P. C. Dhir



| | | |
|---|---|---|
| କବିସୂର୍ଯ୍ୟନଗର<br>ରାଉରକେଲା | ବିଷଧର ସାପ ମୋ ଗଳାମାଳ | ଚିତ୍ର<br>ପରିଚୟ |

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୨୦







* ପରିଚୟୋକ୍ତି ଅକ୍‌ଟୋବର ୧୫ ତାରିଖ ଭିତରେ ପୋଷ୍ଟକାର୍ଡ଼ରେ ଲେଖି ପଠାଇବା ଆବଶ୍ୟକ ।

* ପରିଚୟୋକ୍ତି ଦୁଇ ଗୋଟି ପଦରେ ଲେଖାଯିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ । ପୁରସ୍କାର ପ୍ରାପ୍ତ ପରିଚୟୋକ୍ତି ଡିସେମ୍ବର ସଂଖ୍ୟାରେ ପ୍ରକାଶ ପାଇବ ।

# ଜହ୍ନମାମୁଁ

## ଏ ସଂଖ୍ୟାର କଥା-କାହାଣୀ-ହାସ୍ୟ-ବ୍ୟଙ୍ଗ




Printed by B. V. REDDI at Prasad Process Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 2 & 3, Arcot Road, Madras 600 026 : Controlling Editor : NAGIREDDI




# ଆପଣଙ୍କ ମନଲାଖି ପରିପୂର୍ଣ୍ଣ ମନୋରଞ୍ଜନ!

ରେଡିଓ ସିଲୋନ

ଯଦି ଆକାଶବାଣୀ କାର୍ଯ୍ୟକ୍ରମ ଭିତରେ ଆପଣ ସାରା ପରିବାରର ମନୋରଞ୍ଜନ କରିବାକୁ ଚାହୁଁଥିବେ, ତେବେ 'ରେଡିଓ ସିଲୋନ' ଠାରୁ ଭଲ କାର୍ଯ୍ୟକ୍ରମ ଆଉ ନାହିଁ। ବଂଗଳା, ହିନ୍ଦୀ, ତେଲଗୁ, ତାମିଲ, କାନଡ଼ ଓ ମାଲୟାଲମ ଭାଷାରେ ସୁନ୍ଦର, ଚମତ୍କାର କାର୍ଯ୍ୟକ୍ରମ ପାଇଁ 'ରେଡିଓ ସିଲୋନ୍' ଶୁଣନ୍ତୁ। ଆପଣଙ୍କ ରେଡିଓ ରେ ଏକ ପରେ ଏକ ଭଲ ଭଲ ଷ୍ଟେସନ୍ ଧରନ୍ତୁ। ସେହି ଗୋଟିକ ସୁନ୍ଦର ଶୁଭଦ ହେଉଛି 'ରେଡିଓ ସିଲୋନ'!

ବଂଗଳା–ବିଭାଗ

| | |
|---|---|
| 0600 to 1000 hrs. | 15525 KHZ (19 ମି) |
| | 9720 KHZ (31 ମି) |
| | 6075 KHZ (49 ମି) |
| 1800 to 2300 hrs, | 15425 KHZ (19 ମି) |
| | 9720 KHZ (31 ମି) |
| | 7190 KHZ (41 ମି) |

ହିନ୍ଦୀ–ବେତାରରୁ ଗୀତର ମାଳ

| | |
|---|---|
| 0600 to 1000 hrs. | 11800 KHZ (25 ମି) |
| 1200 to 1400 hrs. | 7190 KHZ (41 ମି) |
| 1900 to 2300 hrs. | 11800 KHZ (25 ମି) |
| | 6075 KHZ (49 ମି) |

ହିନ୍ଦୀ–ବେତାର ସଂଗୀତ

| | |
|---|---|
| 0600 to 1400 hrs. | 11800 KHZ (25 ମି) |
| | 7190 KHZ (41 ମି) |
| 1900 to 2300 hrs. | 11800 KHZ (25 ମି) |
| | 6075 KHZ (49 ମି) |

ତାମିଲ–ବିଭାଗ

| | |
|---|---|
| 1630 to 1900 hrs. | 11800 KHZ (25 ମି) |
| | 6075 KHZ (49 ମି) |

ମାଲୟାଲମ–ବିଭାଗ

| | |
|---|---|
| 1530 to 1630 hrs. | 11800 KHZ (25 ମି) |
| | 7190 KHZ (41 ମି) |
| | 6075 KHZ (49 ମି) |

ତେଲଗୁ–ବିଭାଗ

| | |
|---|---|
| 1430 to 1530 hrs. | 11800 KHZ (25 ମି) |
| | 7190 KHZ (41 ମି) |

କନଡ଼–ବିଭାଗ

| | |
|---|---|
| 1400 to 1430 hrs. | 11800 KHZ (25 ମି) |
| | 7190 KHZ (41 ମି) |

ବିଦେଶରେ ନିଜ ବ୍ୟବସାୟର
ପ୍ରଚାର ଚାହୁଁଥିବା ବିଜ୍ଞାପନଦାତା
ନିମ୍ନଲିଖିତ ଠିକଣାରେ
ସମ୍ପର୍କ କରନ୍ତୁ!

ରେଡିଓ
ଏଡ୍‌ଭରଟାଇସିଂ
ସର୍ଭିସେସ୍

ସୁସିଲ କୋର୍ଟ
ଲେଣ୍ଡସ୍ ଭାକ୍ଲା ରୋଡ
ବୋମ୍ବେ - 400039
ଫୋନ୍ : 213046/7
ଗ୍ରାମ୍ : RADONDA

30, ଗିଫର୍ଡ଼ କ୍ରସ ଷ୍ଟ୍ରିଟ
ମନ୍ଦବଲି ପାକ୍କମ୍
ମାଡ୍ରାଜ - 600028
ଫୋନ୍ : 73736
ଗ୍ରାମ୍ : RADONDA

ବନ୍ଦ ଦିଆଯାଇଥିବା ଜାଗାର ପାଖ ଦେଇ କାଟନ୍ତୁ ।

# ଚନ୍ଦମାମୁଁ - କ୍ୟାମେଲ ରଙ୍ଗ ପ୍ରତିଯୋଗୀତା

## ପ୍ରବେଶିକା ମୂଲ୍ୟ ବିହୀନ





ପୁରସ୍କାର ହାସଲ କରନ୍ତୁ ।

କ୍ୟାମେଲ – ୧ମ ପୁରସ୍କାର ଟ ୧୫

କ୍ୟାମେଲ – ୨ୟ ପୁରସ୍କାର ଟ ୧୦

କ୍ୟାମେଲ – ୩ୟ ପୁରସ୍କାର ଟ ୫

କ୍ୟାମେଲ – ୫ ଗୋଟି ସାନ୍ତ୍ୱନା ଦାୟକ ପୁରସ୍କାର

କ୍ୟାମେଲ – ୧୦ ଗୋଟି ପ୍ରମାଣ ପତ୍ର ।

ଏଥିରେ କେବଳ ୧୨ ବର୍ଷ ବୟସ ପର୍ଯ୍ୟନ୍ତ ଛାତ୍ରମାନେ ଅଂଶ ଗ୍ରହଣ କରିପାରିବେ । ପୂର୍ବରେ ଥିବା ଛବିକୁ ଯେ କୌଣସି କ୍ୟାମେଲ ରଙ୍ଗରେ ରଙ୍ଗୀନ କରନ୍ତୁ । ଆପଣଙ୍କର ରଙ୍ଗୀନ ଚିତ୍ରକୁ ନିମ୍ନ ଠିକଣାରେ ପଠେଇ ଦିଅନ୍ତୁ । **Chandamama 'Corinthian' Flat No. 5, 2nd Floor, 17 Arthur Bunder Road, Colaba, Bombay-400 005.** ଏଥର ଫଳାଫଳ ଚୂଡାନ୍ତ ଏବଂ ଏଥି ସମ୍ବନ୍ଧୀୟ କୌଣସି ଚିଠିପତ୍ର ଦପ୍ତରରୁ ଦିଆଯିବ ନାହିଁ ।

Name. ______________________ Age ______________

Address. ____________________________________

ଆପଣଙ୍କ ନାମ ଓ ଠିକଣା ଇଂରାଜୀରେ ଲେଖନ୍ତୁ ।

ଦୟାକରି ସଂପୂର୍ଣ୍ଣ ଚିତ୍ର ପେଣ୍ଟ ହେବାପ୍ରତି ଧ୍ୟାନ ରଖନ୍ତୁ । ୨୦-୧୦-୧୯୭୨ **CONTEST NO.5**

ଚିତ୍ର ପଠାଇବାର ଶେଷ ତାରିଖ ଃ

# A DECADE OF ACHIEVEMENT



**agriculture**

New agricultural strategy evolved during the decade has ushered in the Green Revolution.
Command Area Programme around major irrigation projects has augmented irrigation facilities.



**industry**

Licensing procedures have been liberalised and simplified.
Self-reliance has been achieved in many fields.

Raw materials are more easily available.
Small Industries have received greater encouragement.



**communications**

Rail and Road transport have improved.
There is a better network of roads.
Post and Telegraph facilities have been expanded.
Telephone connections have multiplied.



**social services**

Integrated medical and health services have been introduced with accent on rural health.
There are more doctors, nurses and hospital beds.
Education has been made free upto higher secondary level in many States.

Special promotional projects have been launched for women and youth welfare.

the infrastructu
has been
strengthened
and economy
stabilised.



**it has been a**

